# ସୋମନାଥ ଗୀତାବଳୀ



ସଂକଳନ ଓ ସଂପାଦନା
ପ୍ରଫେସର ଜାନକୀ ବଲ୍ଲଭ ମହାନ୍ତି

Digitized by srujanika@gmail.com

# ସୋମନାଥ ଗୀତାବଳୀ

ସଂକଳନ ଓ ସଂପାଦନା

ଶ୍ରୀ ଜାନକୀ ବଲ୍ଲଭ ମହାନ୍ତି (ଭଦ୍ରୋକ)

ପ୍ରଫେସର ଓ ମୁଖ୍ୟ ଅଧ୍ୟାପକ ଓଡ଼ିଆ ବିଭାଗ

ରେଭେନ୍ସା କଲେଜ, କଟକ



ଓଡ଼ିଶା ବୁକ୍ ଷ୍ଟୋର

Digitized by srujanika@gmail.com

# ସୋମନାଥ ଗୀତାବଳୀ

ସଙ୍କଳନ ଓ ସମ୍ପାଦନା :

ଶ୍ରୀ ଜାନକୀ ବଲ୍ଲଭ ମହାନ୍ତି

ସତ୍ତ୍ୱାଧିକାରୀ :

ଶ୍ରୀ ସୁକୁମାର ମହାନ୍ତି

ପ୍ରଥମ ପ୍ରକାଶ : ୧୯୮୦

ପ୍ରକାଶକ :

ଶ୍ରୀ ଗୋବର୍ଦ୍ଧନ ଚରଣ ପାତ୍ର

ଓଡ଼ିଶା ବୁକ୍ ଷ୍ଟୋର

ବିନୋଦବିହାରୀ, କଟକ-୭୫୩୦୦୨

ମୁଦ୍ରକ :

ଶ୍ରୀ ରାଧାନାଥ କୋ-ଅ: ପ୍ରେସ୍

କଟକ-୨

ମୂଲ୍ୟ : ଦଶଟଙ୍କା

ବନ୍ଧେଇ ସହ ବାରଟଙ୍କା ପଚାଶ ପଇସା

# SOMANATH GEETABALI

*Edited & compiled by* :

Prof : J. B. Mohanty

*Published by* :

G. C. Patra

Orissa Book Store

Cuttack-2

*First Published* : 1980

*Printed at* :

Sri R. N. Co-op. Press

Cuttack-2

Price : Rs Twelve and fifty paise

Digitized by srujanika@gmail.com

# ସୂଚୀ





Digitized by srujanika@gmail.com

# ଅାଦ୍ୟଛନ୍ଦ ସୂଚୀ

(ବର୍ଣ୍ଣ ମାଳାନୁକ୍ରମିକ)



Digitized by srujanika@gmail.com

Digitized by srujanika@gmail.com

Digitized by srujanika@gmail.com

Digitized by srujanika@gmail.com

| ବିଷୟ | | ପୃଷ୍ଠା |
|---|---|---|




Digitized by srujanika@gmail.com

# ଭୂମିକା

## ଜୀବନ ଚରିତ

ପୂର୍ବତନ ଅନୁଗୁଳ ରାଜ୍ୟର ଶେଷ ରାଜା ହେଉଛନ୍ତି ସୋମନାଥ ସିଂହ । ଏହାଙ୍କ ରାଜତ୍ୱ କାଳରେ ଅନୁଗୁଳ ଖାସ ହେଲା ଓ ଇଂରେଜ ଶାସନର ଅନ୍ତର୍ଭୂକ୍ତ ହୋଇଥିଲା । ଖ୍ରୀ : ୧୮୦୦-୧୮୦୧ରେ ସେ ଭୂମିଷ୍ଠ ହୋଇଥିଲେ ଓ ଖ୍ରୀ : ୧୮୫୩ରେ ହଜାରିବାଗରେ ରାଜବନ୍ଦୀଭାବେ ଶେଷ ନିଃଶ୍ୱାସ ତ୍ୟାଗ କରିଥିଲେ । ସୋମନାଥ ସିଂହ ଯେ ଜଣେ ନିର୍ଭୀକ ଓ ଶକ୍ତିମାନ୍ ସୁଶାସକ ଥିଲେ, ଏ ବିଷୟରେ ସନ୍ଦେହର ଅବକାଶ ନାହିଁ । ଏକ କ୍ଷୁଦ୍ର ରାଜ୍ୟର ରାଜା ହୋଇ ସେ ସେକାଳରେ ପ୍ରବଳପ୍ରତାପୀ ଇଂରେଜ ଶାସକମାନଙ୍କ ବିରୁଦ୍ଧରେ ଆପଣାର ସ୍ୱାଧୀନ ମତ ବ୍ୟକ୍ତ କରିଥିଲେ ଓ ପ୍ରଜାମାନଙ୍କ କଲ୍ୟାଣ ଲାଗି ଆପଣାକୁ ବିପନ୍ନ କରିଥିଲେ । ଏହା ତାହାଙ୍କ ମହାନୁଭବତା ଓ ସାହସିକତାର ହିଁ ପରିଚାୟକ । ତାହାଙ୍କ ଜୀବନଚରିତ ବିଷୟରେ ମିଳୁଥିବା ଉପାଦାନ ପର୍ଯ୍ୟାପ୍ତ ମନେହୁଏ ନାହିଁ ।

ଅନୁଗୁଳଠାରୁ ପ୍ରାୟ ୧୦ ମାଇଲ ଦୂରରେ ଅବସ୍ଥିତ ପୁରୁଣାଗଡ଼ରେ ତାଙ୍କର ରାଜଧାନୀ ଥିଲା । ତାହାଙ୍କର ଯୌବନକାଳ ସେକାଳର ପରିବେଶରେ ରାଜକୀୟ ଭୋଗବିଳାସରେ ଅତିବାହିତ ହୋଇଥିବା ସମ୍ଭବପର । ମାତ୍ର ନାନା କାରଣରୁ ସେ ତତ୍କାଳୀନ ଇଂରେଜ ଶାସକବର୍ଗଙ୍କର ପ୍ରୀତିଭାଜନ ହୋଇପାରି ନଥିଲେ । ଏଥିପାଇଁ ତାଙ୍କୁ ବହୁ ସଂଘର୍ଷ ଓ ଅନ୍ତର୍ଦ୍ୱନ୍ଦ୍ୱର ମଧ୍ୟ ସମ୍ମୁଖୀନ ହେବାକୁ ପଡ଼ିଥିଲା । ପରିଶେଷରେ ଏହାହିଁ ତାଙ୍କ ଜୀବନରେ ତଥା ଅନୁଗୁଳ ରାଜବଂଶରେ ଘଟାଇଥିଲା ଚରମ ଦୁର୍ଯୋଗ ।

ରାଜା ସୋମନାଥଙ୍କ ସମ୍ପର୍କରେ ଇ. ବି. କୋବଡ଼େନ୍ ରାମ୍‌ସେ ଲେଖିଯାଇ-ଅଛନ୍ତି—ସେ ଥିଲେ ଅତ୍ୟାଗ୍ରହୀ ଓ ସେ ସରକାରଙ୍କ ବିରୁଦ୍ଧରେ ଯୁଦ୍ଧ କରିବାକୁ ବ୍ୟବସ୍ଥା କରୁଥିଲେ । କନ୍ଧମାନଙ୍କ ମେରିଆ ପ୍ରଥା ଦମନ ଲାଗି ନିୟୋଜିତ ସରକାରୀ କର୍ମଚାରୀଙ୍କୁ ସେ ବିରୋଧ କରୁଥିଲେ । ଯେଥିପାଇଁ ତାଙ୍କୁ ବନ୍ଦୀ କରାଇ ସରକାର ଅନୁଗୁଳକୁ ହାତକୁ ନେଇଥିଲେ (୧) । ଏହି ଉକ୍ତି ସତ୍ୟ ନୁହେଁ । ପରନ୍ତୁ

---

(୧) In 1847 Angul was annexed on account of the misconduct of it's chief, who was found to be preparing to wage war against government and to countenance those who opposed the officers of Government employed in supress-ing Mariah or human sacrifice amoung the khoncs in Boud".

Orissa Feudatory states (1910) P-24

Digitized by srujanika@gmail.com

କେତେକାଂଶରେ ଅତିରଞ୍ଜିତ ଓ କପୋଳକଳ୍ପିତ । ବାସ୍ତବରେ ସୋମନାଥ ଥିଲେ ସୁଶାସକ, ଆତ୍ମାଭିମାନୀ, ବଗ୍ଧରବନ୍ତ ଓ କାବ୍ୟଶାସ୍ତ୍ରାନୁରାଗୀ । ଜୀବଦ୍ଦକାଳର ଶେଷ କେତେବର୍ଷ ତାଙ୍କୁ ଘୋର ଶାରୀରିକ, ମାନସିକ ଯନ୍ତ୍ରଣା ଓ ଦ୍ୱନ୍ଦ୍ୱ ମଧ୍ୟରେ ଗତି କରିବାକୁ ପଡ଼ିଥିଲା । ତାଙ୍କର ମାନସିକ ଅଶାନ୍ତି ଲାଗି ଇଂରେଜ ଶାସକବର୍ଗ ଯେ ମୁଖ୍ୟତଃ ଦାୟୀ ଏହା ନିର୍ବିବାଦରେ କୁହାଯାଇପାରେ । ସେ ସମୟରେ ଶାସନର ସୁବିଧା ଦୃଷ୍ଟିରୁ ଭୌଗୋଳିକ ଓଡ଼ିଶାର ମଧ୍ୟବର୍ତ୍ତୀ ରାଜ୍ୟ ଅନୁଗୁଳଟିକୁ ଅଧିକାର କରିବା ଥିଲା ଇଂରେଜ ଶାସକମାନଙ୍କ ଏକାନ୍ତ ଅଭିପ୍ରାୟ । ଏଣୁ ନାନା ମିଥ୍ୟା ଅଭିଯୋଗରେ ସେମାନେ ସୋମନାଥଙ୍କୁ ଅଭିଯୁକ୍ତ କରିଥିଲେ ଓ ଅବଶେଷରେ ସପରିବାର ସୋମନାଥଙ୍କୁ ବନ୍ଦୀ କରି ହଜାରିବାଗଠାରେ ଅନ୍ତରୀଣ କରି ରଖିଥିଲେ । ସେହି ବନ୍ଦୀଶାଳାରେ ଖ୍ରୀ ୧୮୫୩ ମସିହା ଜୁନ ମାସରେ ସୋମନାଥଙ୍କ ଦେହାନ୍ତ ହୋଇଥିଲା । ସୋମନାଥଙ୍କ ପୁତ୍ରପ୍ରତି ମଧ୍ୟ ଶାସକବର୍ଗ ଅନୁକୂଳ ନ ଥିଲେ । ଚରମ ଅବିଚାର ଫଳରେ ସେ ମଧ୍ୟ ରାଜ୍ୟଚ୍ୟୁତ ହୋଇ ଅତି ଦୁଃସ୍ଥ ଓ ମାନସିକ ଅବସାଦଗ୍ରସ୍ତ ହୋଇ ପ୍ରାଣତ୍ୟାଗ କରିଥିଲେ । ଅନୁଗୁଳ ରାଜବଂଶ ଚିରଦିନ ପାଇଁ ବିଲୁପ୍ତ ହୋଇଗଲା । କିପରି ଭାବରେ ଅନୁଗୁଳ ରାଜବଂଶର ଏହି ଶେଷ ଦୀପଶିଖାଟି ନିର୍ବାପିତ ହୋଇଥିଲା, ତାହା ଏଠାରେ ବର୍ଣ୍ଣିତ ହେଲା ।

ଖ୍ରୀ : ୧୮୧୧ ରେ ଅନୁଗୁଳର ରାଜା ଜରିଓର ସିଂହଙ୍କ ମୃତ୍ୟୁ ହେବାପରେ ତାଙ୍କର ସାନଭାଇ ଜୟସିଂହ ରାଜା ହୋଇଥିଲେ । ମାତ୍ର ଏହାପରେ ଅନୁଗୁଳ ରାଜବଂଶରେ ଗୃହଯୁଦ୍ଧ ଆରମ୍ଭ ହୋଇଯାଇଥିଲା । ଜୟସିଂହ ରାଜା ହେବାର ଅଳ୍ପ କେତେମାସ ପରେ ତାଙ୍କର ବିମାତା ପୁତ୍ର ପୃଥ୍ୱୀସିଂହ ତାଙ୍କୁ ହତ୍ୟା କରି ନିଜେ ରାଜଗାଦିରେ ବସିଲେ । ଏହାପରେ ଜରିଓରଙ୍କ ଏକ ରକ୍ଷିତାର ସନ୍ତାନ ଲୋକନାଥ ସିଂହ ରାଜଗାଦି ଦାବୀ କରି ସରକାରଙ୍କୁ ଆବେଦନ କଲେ । ଏହାର ବିଚାର କରାଯାଇ ପୃଥ୍ୱୀସିଂହଙ୍କ ଅମାନୁଷିକ କାର୍ଯ୍ୟଯୋଗୁଁ ତାଙ୍କୁ ଦୋଷୀ ସାବ୍ୟସ୍ତ କରାଗଲା । ଲୋକନାଥଙ୍କ ଦାବୀକୁ ମଧ୍ୟ ସରକାର ପ୍ରତ୍ୟାଖ୍ୟାନ କରି ଜୟସିଂହଙ୍କର କନିଷ୍ଠ ଭ୍ରାତା ମୃତ ଗୋପୀନାଥ ସିଂହଙ୍କ ଅପ୍ରାପ୍ତବୟସ୍କ ପୁତ୍ର ସୋମନାଥଙ୍କୁ ରାଜଗାଦି ଦେବାକୁ ନିଷ୍ପତ୍ତି କରି ଦେଇଥିଲେ ।

ସେତେବେଳେ ସୋମନାଥଙ୍କୁ ପୃଥ୍ୱୀ ସିଂହ କାରାଗାରରେ ନିକ୍ଷେପ କରିଥିଲେ । ତାଙ୍କୁ କାରାଗାରରୁ ମୁକ୍ତ କରାଯାଇ ଥିଲା ଓ ଖ୍ରୀ : ୧୮୧୪ ରେ ତାହାଙ୍କର ଅଭିଷେକ ହୋଇଥିଲା । ସେତେବେଳକୁ ତାଙ୍କୁ ଆନୁମାନିକ ଚଉଦ ବର୍ଷ ବୟସ । ଖ୍ରୀ : ୧୮୧୭ ରେ ସେ ରାଜାର କ୍ଷମତା ଲାଭ କରିଥିଲେ । ଅଳ୍ପ ବୟସ୍କ ହେଲେ ହେଁ ସୋମନାଥ ଥିଲେ ବୁଦ୍ଧିମାନ, ସାହସୀ ଓ ରାଜନୀତିକୁଶଳ । ତାହାଙ୍କ ସୁଶାସନ ଫଳରେ ଅନୁଗୁଳରେ ଶାନ୍ତି ପ୍ରତିଷ୍ଠା ହୋଇ ପାରିଥିଲା ଓ

Digitized by srujanika@gmail.com

ଅଳ୍ପକାଳ ମଧ୍ୟରେ ସେ ପ୍ରତିବେଶୀ ରାଜାମାନଙ୍କ ମଧ୍ୟରେ ମଧ୍ୟ ନିଜର ବ୍ୟକ୍ତିତ୍ୱକୁ ପ୍ରତିଷ୍ଠିତ କରି ପାରିଥିଲେ । ସମ୍ଭବତଃ ୧୮୧୨ ବର୍ଷରେ ତାଳଚେର ରାଜକନ୍ୟାଙ୍କ ସହିତ ତାଙ୍କର ବିବାହ ସମ୍ପାଦିତ ହୋଇଥିଲା ।

ସେତେବେଳେ ରାଜ୍ୟର ସୀମା ସମ୍ପର୍କରେ ଗଡ଼ଜାତ ରାଜାମାନଙ୍କ ମଧ୍ୟରେ ବିବାଦ ଓ ସଂଘର୍ଷ ସୃଷ୍ଟି ହେଉଥିଲା । ସୋମନାଥଙ୍କ ରାଜତ୍ୱର ୧୧ଶ ବର୍ଷରେ ୧୮୨୫ ଖ୍ରୀଷ୍ଟାବ୍ଦରେ ଢେଙ୍କାନାଳ ରାଜାଙ୍କ ସହିତ ତାଙ୍କର ଏକ ଯୁଦ୍ଧ ହୋଇଥିଲା । ଏହି ଯୁଦ୍ଧ ଖୁବ୍ ଭୀଷଣ ହୋଇଥିବା ଅନୁମେୟ । ଏଥିରେ ସୋମନାଥ ଜୟ ଲାଭ କରିଥିଲେ । ଏହି ଯୁଦ୍ଧ ପ୍ରସଙ୍ଗକୁ ଭିତ୍ତିକରି ତାହାଙ୍କ ସମକାଳୀନ କବି କବିଚନ୍ଦ୍ର ନୃସିଂହ ରାୟଗୁରୁ 'ବୁଢ଼ାପଙ୍କ ଯୁଦ୍ଧପୋଥି' ନାମକ ୧୬ଶ ଛାନ୍ଦବିଶିଷ୍ଟ ଏକ କାବ୍ୟ ରଚନା କରିଅଛନ୍ତି । (୧)

କବି ନୃସିଂହଙ୍କ ବର୍ଣ୍ଣନା ଅନୁସାରେ ଏହି ଯୁଦ୍ଧ ମାତ୍ର ଦୁଇଦିନ ହୋଇଥିଲା । ପ୍ରଥମଦିନ ଢେଙ୍କାନାଳର ସ୍ୱରଶହି ସେନ୍ୟ ନିହତ ହୋଇଥିଲେ । ଇଂରେଜ ରାଜତ୍ୱ କାଳରେ ସୋମନାଥଙ୍କ ଦ୍ୱାରା ଢେଙ୍କାନାଳର ଶହି ଶହି ସୈନ୍ୟ ନିହତ ହୋଇଥିବା ସମ୍ପୂର୍ଣ୍ଣ ଅତିରଞ୍ଜିତ । ଏହି ଯୁଦ୍ଧରେ ସୋମନାଥଙ୍କ ଶ୍ୱଶୁର ତାଳଚେରର ରାଜା ଭଗୀରଥୀ ହରିଚନ୍ଦନ ତାଙ୍କୁ ସାହାଯ୍ୟ କରିଥିଲେ । ସୋମନାଥ ନିଜେ ରଣକ୍ଷେତ୍ରରେ ଯୁଦ୍ଧ ପରିଚାଳନା କରିଥିବା ଜଣାଯାଏ । ଯାହାହେଉ, କବି ନୃସିଂହ ତାହାଙ୍କ କାବ୍ୟରେ ମୁଖ୍ୟତଃ ରାଜାଙ୍କୁ ବୀର ଭାବେହିଁ ଚିତ୍ରଣ କରିଛନ୍ତି । ଏହି କାବ୍ୟର ସୋମନାଥଙ୍କ ବ୍ୟକ୍ତିତ୍ୱର ବିଭିନ୍ନ ଦିଗର ପରିଚୟ ମିଳେ ନାହିଁ । ଶ୍ରୀଯୁକ୍ତ ସୁଧାକର ପଟ୍ଟନାୟକଙ୍କ ନିର୍ଦ୍ଧାରଣ ଅନୁଯାୟୀ କାବ୍ୟଟି ଯଥାର୍ଥତଃ ୧୮୫୩ ଖ୍ରୀଷ୍ଟାବ୍ଦରେ ଅନୁଗୁଳ ଇଂରେଜ ଶାସନାଧୀନ ହେବାପରେ ରଚିତ ହୋଇଥିଲା । କାବ୍ୟଟି 'ସମରତରଙ୍ଗ' ଆଦର୍ଶରେ ରଚିତ ହୋଇଥିବା ଯୋଗୁ ଏଥିରେ ରାଜାଙ୍କୁ କବି ଯୁଦ୍ଧପ୍ରିୟ ରୂପେ ହିଁ ଚିତ୍ରଣ କରିଅଛନ୍ତି ।

ତାହାଙ୍କ ବର୍ଣ୍ଣନାନୁଯାୟୀ ରଜା ନିଜେ ଯୁଦ୍ଧ ପୋଷାକ ପରିଧାନ କରି ବହୁ ଅସ୍ତ୍ର ଶସ୍ତ୍ରରେ ସଜ୍ଜିତ ହୋଇ ଅଶ୍ୱାରୋହଣ ପୂର୍ବକ ଯୁଦ୍ଧ ପରିଚାଳନା କରୁଥିଲେ । ଏହି ଯୁଦ୍ଧାଶ୍ୱର ନାମ ଥିଲା ମହୀମଣ୍ଡନ । ତାହାଙ୍କ ଅନ୍ୟତମ ଅଶ୍ୱର ନାମ ସୁମତି ଓ ପତାକାର ନାମ ଥିଲା ହରିବାହନ ।

---

(୧) ଏହି ପୋଥି ସୁଧାକର ପଟ୍ଟନାୟକଙ୍କ ଦ୍ୱାରା 'ରାଜା ସୋମନାଥ ସିଂହ ଜଗଦେବ' ନାମରେ ନାମିତ ହୋଇ ଏକ ବିସ୍ତୃତ ମୁଖବନ୍ଧ ସହିତ ସଙ୍କଳିତ ଓ ପ୍ରକାଶିତ ହୋଇଅଛି । ପ୍ରଥମ ପ୍ରକାଶ ୧୯୬୫ ।

Digitized by srujanika@gmail.com

"ଏହା ଶୁଣି ଅନୁଗୁଳ ନରେଶ
ସୈନ୍ୟ ସଜକର ଦେଲେ ଆଦେଶ
ପହରିଲେ ଯୁଦ୍ଧ ପୋଷାକ ଅଙ୍ଗେ
ନାନା ଅସ୍ତ୍ରଶସ୍ତ୍ର ଘେନିଣ ସଙ୍ଗେ
ସେ ନୃପତି ଭାନୁ
କୋପୀ ସିଂହ ପ୍ରାୟ୍ଯ କମ୍ପଇ ତନୁ ।"

ବୁଢ଼ାପଙ୍କ ପୋଥି ୨।୩

ସୋମନାଥଙ୍କ ଶୌର୍ଯ୍ୟ ଓ ବ୍ୟକ୍ତିତ୍ୱ ଯୋଗୁ ପ୍ରତିବେଶୀ ରାଜ୍ୟର ରାଜାମାନେ ମଧ୍ୟ ତାଙ୍କୁ ସମ୍ମାନ ଓ ସମ୍ଭ୍ରମ ପ୍ରଦର୍ଶନ କରୁଥିଲେ ।

"ଏକଚକ୍ର ହୋଇଲେ ସୋମନାଥ
ସବୁଆଡ଼େ ଫୋଡ଼ିଲେ ଯୁଦ୍ଧପଥ
ଢେଙ୍କାନାଳ ଦଶପଲ୍ଲା ବଉଦ
ରେଢ଼ାଖୋଲ ହଣ୍ଡପା ରାଜ୍ୟେ ବାଦ
ପୁଣି ବାମଣ୍ଡାକୁ ଶଙ୍କା ଦଆଇ
ରାଜାମାନଙ୍କ ଭାଙ୍ଗିଲେ ବଡ଼ାଇ
କାହିଁ ହିନ୍ଦୋଳ ଧୁମୁସର ଖଣ୍ଡ
ସବୁଆଡ଼େ କଲେ ଆଜ୍ଞା ପ୍ରଚଣ୍ଡ ।
କେତେ କହିବ ଯେ ତାଙ୍କ ଚରିତ
ସେହି ଯୁଦ୍ଧରୁ ସବୁ ବିପରୀତ ।"

ସୋମନାଥଙ୍କ ଶୌର୍ଯ୍ୟ, ସାହସ ସେ ସମୟରେ ଅନ୍ୟାନ୍ୟ ଗଡ଼ଜାତ ରାଜାମାନଙ୍କ ଅପେକ୍ଷା ଥିଲା ଉନ୍ନତ । ଏହା ତତ୍କାଳୀନ ଇଂରେଜ ରାଜକର୍ମଚାରୀଙ୍କ ଦୃଷ୍ଟି ମଧ୍ୟ ଆକର୍ଷଣ କରିପାରିଥିଲା । ଢେଙ୍କାନାଳ ଯୁଦ୍ଧ ପରେ ଅଥବା ଅନ୍ୟ ଯେଉଁ କାରଣରୁ ହେଉ ନା କାହିଁକି ସେମାନେ ସୋମନାଥଙ୍କ ସମ୍ପର୍କରେ ସନ୍ଦିହାନ ହୋଇ ପଡ଼ିଥିଲେ ଓ ସେତେବେଳେ ଅନୁଗୁଳ ନିକଟବର୍ତ୍ତୀ ଅଞ୍ଚଳରେ ଯାହାକିଛି ଦୁର୍ଘଟଣା ଘଟୁଥିଲା, ତାହା ସୋମନାଥଙ୍କ ନିର୍ଦ୍ଦେଶରେ ହିଁ ସଂଘଟିତ ହେଉଛି ବୋଲି ଧରି ନେଉଥିଲେ । ଖ୍ରୀ: ୧୮୩୧ରେ ଦଶପଲ୍ଲାର କେତେକ ଗ୍ରାମ ଲୁଟପାଟ ହୋଇଥିଲା । ଏହା ସୋମନାଥଙ୍କ ଯୋଗୁ ହୋଇଛି ବୋଲି ଅଭିଯୋଗ କରାଯାଇ ତାଙ୍କୁ ୧୪୫୦ ଟଙ୍କା କ୍ଷତିପୂରଣ ଦେବାକୁ ସରକାର ଆଦେଶ ଦେଲେ । ମାତ୍ର ରାଜା ସୋମନାଥ ଏହି କାର୍ଯ୍ୟ ତାଙ୍କ ଦ୍ୱାରା ହୋଇନାହିଁ ବୋଲି କହିବା ସଙ୍ଗେ ସଙ୍ଗେ ଏଇ ଟଙ୍କା ସେ ଦେଇ ପାରିବେ ନାହିଁ ଓ ଏହା ସୁପରିଣ୍ଟେଣ୍ଡେଣ୍ଟ ତହସିଲଦାରଙ୍କୁ ପଠାଇ ସଗିହ

Digitized by srujanika@gmail.com

କରାଇ ନଥିଲୁ ବୋଲି ଉତ୍ତର ଦେଇଥିଲେ । ସେ ଯୁଗରେ ଏପରି ଉତ୍ତର ଦେବା ଯେ ଦୁଃସାହସିକତା, ଏହା ସହଜରେ ଅନୁମେୟ ।

ଖ୍ରୀ: ୧୮୩୬ରେ ଅନୁଗୁଳର ଛଅଜଣ ଲୋକ ଜନୈକ ଅଜ୍ଞାତ ହତ୍ୟାକାରୀ ଦ୍ୱାରା ନିହତ ହୋଇଥିଲେ । ଇଂରେଜ କର୍ତ୍ତୃପକ୍ଷ ଏହି ଅମାନୁଷିକ କାର୍ଯ୍ୟ ସୋମନାଥଙ୍କ ନିର୍ଦ୍ଦେଶରେ ହୋଇଛି ବୋଲି ବିଶ୍ୱାସ କରି ତାଙ୍କୁ କୈଫିୟତ୍ ମାଗିଲେ । ମାତ୍ର ରାଜା ଏ ବିଷୟରେ କୌଣସି ତତ୍ପରତା ଦେଖାଇଲେ ନାହିଁ କିମ୍ବା କେଉଁ ଲୋକମାନଙ୍କ ଦ୍ୱାରା ଏହି ହତ୍ୟାକାଣ୍ଡ ସଂଘଟିତ ହୋଇଛି ସେମାନଙ୍କ ନାମ ଜଣାଇଲେ ନାହିଁ । ରାଜାଙ୍କ ଏତାଦୃଶ ଆଚରଣରେ ବିକ୍ଷୁବ୍ଧ ହୋଇ ତତ୍କାଳୀନ ସୁପରିଣ୍ଟେଣ୍ଡେଣ୍ଟ ରିକେଟ୍‌ସ ତାଙ୍କ ସମ୍ପର୍କରେ ଲେଖିଥିଲେ, "ଏ ରାଜା ଅଜ୍ଞାନ ଓ ଏକଜିଦିଆ ! ଯେତେ ଧମକ ଦେଲେ ବା ଯୁକ୍ତିଯୁକ୍ତ କଥା କହିଲେ ବି ସେ ଶୁଣିବାକୁ ନାରାଜ ।" (୧)

ଏହି ସମୟରେ ଗୋଟିଏ ମିଲିଟାରୀ ଫୋର୍ସ ମହାନଦୀ କୂଳେ କୂଳେ ଅନ୍ୟତ୍ର ଯିବାଲାଗି ପ୍ରେରିତ ହୋଇଥିଲେ । ରିକେଟ୍ ସେମାନଙ୍କୁ ଅନୁଗୁଳ ଆଡ଼େ ଯିବା ପାଇଁ ନିର୍ଦ୍ଦେଶ ଦେଲେ । ସମ୍ଭବତଃ ଏହି କାରଣରୁ ସୋମନାଥ ତାଙ୍କ ଉପରେ ଧାର୍ଯ୍ୟ କରାଯାଇଥିବା କ୍ଷତିପୂରଣ ବାବଦ କିଛି ଟଙ୍କା ଓ ହତ୍ୟାକାରୀ ଭାବେ ଅଭିଯୁକ୍ତ ଛଅଜଣ ବ୍ୟକ୍ତିଙ୍କୁ ବିଚାର ଲାଗି ସାହେବଙ୍କ ନିକଟକୁ ପଠାଇଥିଲେ ।

ଏହାପରେ ପ୍ରାୟ ଦଶବର୍ଷ ଅର୍ଥାତ୍ ଖ୍ରୀ: ୧୮୪୬ ପର୍ଯ୍ୟନ୍ତ ସୋମନାଥଙ୍କର ଶାସନ ନିରୁପଦ୍ରବ ଥିଲା ଓ ଏହି ସମୟରେ ସେ ଅପେକ୍ଷାକୃତ ନିଶ୍ଚିନ୍ତ ଜୀବନଯାପନ କରୁଥିବା ଅନୁମାନ । ସମ୍ଭବତଃ ଏହି ସମୟରେ ହିଁ ସେ ସଙ୍ଗୀତ ରଚନା ପ୍ରତି ଆକୃଷ୍ଟ ହୋଇଥିଲେ । ତାଙ୍କ ରାଜତ୍ୱର ଶେଷ ତିନିବର୍ଷ ଘୋର ଦୁଶ୍ଚିନ୍ତାପୂର୍ଣ୍ଣ ଥିଲା । ଇଂରେଜ କର୍ତ୍ତୃପକ୍ଷ ତାହାଙ୍କ ବିରୁଦ୍ଧରେ ନାନା ପ୍ରକାର କାଳ୍ପନିକ ଓ ମିଥ୍ୟା ଅଭିଯୋଗ କରି ତାଙ୍କୁ ଘୋର ଦୁଶ୍ଚିନ୍ତାଗ୍ରସ୍ତ କରିଥିଲେ । ତେଣୁ ଏହି ସମୟ ମଧ୍ୟରେ ତାଙ୍କ ପକ୍ଷରେ କାବ୍ୟ ସୃଷ୍ଟିରେ ମନୋନିବେଶ କରିବା କଦାପି ସମ୍ଭବ ହୋଇ ନ ଥିବ ।

୧୮୪୬ ମସିହାରେ ହିନ୍ଦୋଳ ରାଜାଙ୍କ ସାନଭାଇ ଅନୁଗୁଳରେ ଆଶ୍ରୟ ନେଇଥିଲେ ଓ ହିନ୍ଦୋଳର କୁରୁମିଠା ନାମକ ଗ୍ରାମଟିକୁ ସୋମନାଥଙ୍କୁ ଦେବେ ବୋଲି ଚୁକ୍ତିକରି ତାଙ୍କଠାରୁ ୧୧୦୦ ଟଙ୍କା ନେଇଥିଲେ । ତାହାଙ୍କ ବଡ଼ଭାଇ ମରିଗଲା ପରେ ସେ ହିନ୍ଦୋଳର ରାଜା ହେଲେ । ମାତ୍ର କୁରୁମିଠା ଗାଆଁଟି

(୧) One of those ignorant and stuborn beings who will listen to neither reasoning nor warning'.

Digitized by srujanika@gmail.com

ସୋମନାଥଙ୍କୁ ଦେବାକୁ ଆଉ ସ୍ୱୀକୃତ ହେଲେ ନାହିଁ । ଏଥିପାଇଁ ହିନ୍ଦୋଳ ରାଜାଙ୍କ ସହିତ ସୋମନାଥଙ୍କର ବିବାଦ ସୃଷ୍ଟି ହେଲା । ଏହାର ବିଚାର ଲାଗି ହିନ୍ଦୋଳ ରାଜା କର୍ତ୍ତୃପକ୍ଷଙ୍କୁ ଜଣାଇଲେ । ମାତ୍ର ଏହା ବିଚାରାଧୀନ ଥିବା ସମୟରେ ସୋମନାଥ ଉକ୍ତ ଗ୍ରାମଟିକୁ ଦଖଲ କରନେଲେ । ଓଡ଼ିଶା ଗଡ଼ଜାତ ମହାଲର ତତ୍କାଳୀନ ସୁପରିଣ୍ଟେଣ୍ଡେଣ୍ଟ ମିଲ୍ ସାହେବ ସୋମନାଥଙ୍କର ଏତାଦୃଶ କାର୍ଯ୍ୟକୁ ସରକାରଙ୍କ ପ୍ରତି ଏକ ଅସମ୍ମାନଜନକ ଆଚରଣ ବୋଲି ମନ୍ତବ୍ୟ ପ୍ରକାଶ କରି ତାଙ୍କୁ ୫୩୦୦୦ ଟଙ୍କା ଜୋରିମାନା କଲେ । ସୋମନାଥ ଏହି ଜୋରିମାନା ଦେଲେ କି ନାହିଁ, ତାହା ଜଣାଯାଏ ନାହିଁ । ମାତ୍ର ଏହି ସମୟରେ ତାଙ୍କ ବିରୁଦ୍ଧରେ ଅନ୍ୟଏକ ଅଭିଯୋଗ କରିଥିଲେ ତତ୍କାଳୀନ ପଲିଟିକାଲ୍ ଏଜେଣ୍ଟ କ୍ୟାପଟେନ ମାକଫର୍ସନ୍ ।

ସେତେବେଳେ କନ୍ଧମାନଙ୍କର ନରବଳି ବା ମେରିଆ ପ୍ରଥା ବିରୁଦ୍ଧରେ ସରକାର ନାନା ବ୍ୟବସ୍ଥା କରିଥିଲେ । ଏହା କନ୍ଧମାନଙ୍କ ମଧ୍ୟରେ ଏକ ଆନ୍ଦୋଳନ ସୃଷ୍ଟି କରିଥିଲା ଓ ଏହି ଆନ୍ଦୋଳନର ନେତୃତ୍ୱ ନେଇଥିଲେ କନ୍ଧ ନେତା ନବଘନ କୁଅଁର । ମାତ୍ର ଏହାର କୌଣସି ପ୍ରମାଣ ନଥିବା ସତ୍ତ୍ୱେ ସୋମନାଥ ଏହି ନବଘନ କୁଅଁରଙ୍କୁ ଗୋପନରେ ସାହାଯ୍ୟ କରୁଛନ୍ତି ବୋଲି ମାକଫର୍ସନ୍ ବଙ୍ଗ ସରକାରଙ୍କୁ ଜଣାଇ ଦେଇଥିଲେ । ଏହାଫଳରେ ରାଜାଙ୍କ ପ୍ରତି ସରକାରଙ୍କ ଧାରଣା ଖରାପ ହେବା ସ୍ୱାଭାବିକ । ରାଜାଙ୍କ କାର୍ଯ୍ୟକଳାପକୁ ଗୋପନରେ ଅନୁସନ୍ଧାନ କରି ସେ ସମ୍ପର୍କରେ ସରକାରଙ୍କୁ ରିପୋର୍ଟ କରିବା ଲାଗି ଓ୍ୱାଜିମହମ୍ମଦ ନାମକ ଜଣେ ବ୍ୟକ୍ତିଙ୍କୁ ନିଯୁକ୍ତ କରାଯାଇଥିଲା ।

ଏହି ସମୟରେ ନବଘନର ପୁଅ ବୀର କୁଅଁରଙ୍କୁ ଏଜେଣ୍ଟଙ୍କ ପାଖକୁ ପଠାଇବା ଲାଗି ରାଜାଙ୍କ ନିକଟକୁ ନିର୍ଦ୍ଦେଶ ଆସିଲା । ବୀର କୁଅଁରକୁ ପଠାଇଲେ ତାହାର କୌଣସି ଅନିଷ୍ଟ ହେବନାହିଁ ବୋଲି ମଧ୍ୟ ରାଜାଙ୍କୁ ଜଣାଇ ଦିଆଯାଇଥିଲା । ସୋମନାଥ ଏଥିରେ ବିଶ୍ୱାସ କରି ବୀର କୁଅଁରକୁ ପଠାଇଥିଲେ । ମାତ୍ର ପଲିଟିକାଲ ଏଜେଣ୍ଟ ବୀର କୁଅଁରକୁ ବନ୍ଦୀ କରି ରଖିଲେ । ନୀତିବାଦୀ ଓ ନିର୍ଭୀକ ସୋମନାଥ ଏଜେଣ୍ଟଙ୍କର ଏତାଦୃଶ କାର୍ଯ୍ୟକୁ ସମର୍ଥନ କରି ନ ପାରି ଏହି ବିଷୟ ସୁପରିଣ୍ଟେଣ୍ଡେଣ୍ଟ ମିଲ୍‌ଙ୍କ ଦୃଷ୍ଟିକୁ ଆଣିଥିଲେ ।

୧୮୪୭ ଫେବୃୟାରୀ ମାସରେ ଦଶପଲ୍ଲାର କୁରୁସୀ ଓ ମାରଡ଼ା ନାମକ ଗାଆଁ ଦୁଇଟି ଲୁଣ୍ଠିତ ହୋଇଥିଲା ଓ ଦଳେ ପଶ୍ଚିମା ଯାତ୍ରୀ ମଧ୍ୟ ତାହାଦ୍ୱାରା ନିହତ ହୋଇଥିଲେ । ନବନିଯୁକ୍ତ ସୁପରିଣ୍ଟେଣ୍ଡେଣ୍ଟ କ୍ୟାପଟେନ ହେଡ଼୍ ଏହା ଅନୁଗୁଳ ରାଜାଙ୍କ ଯୋଗୁ ହୋଇଛି ବୋଲି ସନ୍ଦେହ କଲେ ଓ ବୌଦର କୁସନଗଡ଼ରେ ଅବସ୍ଥାପିତ ଇଂରେଜ ସୈନ୍ୟଦଳଙ୍କ ବିରୁଦ୍ଧରେ ଅସାଧାରଣ କାର୍ଯ୍ୟ

Digitized by srujanika@gmail.com

କନ୍ଧନେତା ନବଘନ କୁଅଁରକୁ ସାହାଯ୍ୟ କରିଛନ୍ତି ବୋଲି ସେ ମଧ୍ୟ ରାଜାଙ୍କୁ ଅଭିଯୁକ୍ତ କଲେ । ଏହାପରେ ଅନୁଗୁଳର ନିକଟବର୍ତ୍ତୀ ଅଞ୍ଚଳରେ ଏହି ସମୟରେ ଯାହାକିଛି ଅଶୋଭନୀୟ ବା ବିରୁଦ୍ଧାତ୍ମକ ଘଟଣା ଘଟୁଥିଲା, ତାହା ସୋମନାଥଙ୍କ ଦ୍ୱାରା ହେଉଛି ବୋଲି ସରକାରୀ କର୍ତ୍ତୃପକ୍ଷ ମନେ କରୁଥିଲେ । ରାଜା ଏହାର ପ୍ରତ୍ୟୁତ୍ତର ସ୍ୱରୂପ ତାହାଙ୍କ ଅର୍ଜିରେ ଜଣାଇଲେ ଯେ ଏଜେଣ୍ଟ ମାକଫରସନ୍ ନବଘନର ପୁଅ ବୀର କୁଅଁରକୁ ବନ୍ଦୀ କରିବା ଫଳରେ ହିଁ ନବଘନ ଉତ୍ୟକ୍ତ ହୋଇ ଏପରି ଘଟଣା କରିଥିବା ସମ୍ଭବପର, ମାତ୍ର ଏଥିରେ ତାଙ୍କର ଆଦୌ ହାତ ନାହିଁ ।

ଧୃମୁସରର ବିଦ୍ରୋହୀ ନେତା ଚକ୍ର ବିଶୋଇକୁ ମଧ୍ୟ ସୋମନାଥ ଗୋପନରେ ସାହାଯ୍ୟ କରିଛନ୍ତି ବୋଲି ତାଙ୍କ ବିରୁଦ୍ଧରେ ଅଭିଯୋଗ ଅଣାଯାଇଥିଲା । ସୋମନାଥ ଏହା ଅସ୍ୱୀକାର କଲେ ହେଁ ତାଙ୍କୁ ସୁପରିଣ୍ଟେଣ୍ଡେଣ୍ଟଙ୍କ ପାଖକୁ ଯାଇ ନିଜ ବିଶ୍ୱସ୍ତତାର ପ୍ରମାଣ ଦେବାକୁ ଏବଂ ଚକ୍ର ବିଶୋଇ ଓ ନବଘନ କୁଅଁରକୁ ଅର୍ପଣ କରିବାକୁ ପୁନଶ୍ଚ ଆଦେଶ ଦିଆଗଲା । ସେହିବର୍ଷ ମାର୍ଚ୍ଚ ମାସରେ କଟକ ଆସିବା ଲାଗି ସୋମନାଥଙ୍କ ନିକଟକୁ ପରୱାନା ପଠାଗଲା । ସେତେବେଳକୁ ପୀଡ଼ିତ ହୋଇ ସେ ଚଳତ୍‌ଶକ୍ତିହୀନ ହୋଇ ପଡ଼ିଥାନ୍ତି । ଏଣୁ କଟକ ଯିବା ତାଙ୍କ ପକ୍ଷେ ମଧ୍ୟ ସମ୍ଭବପର ହୋଇ ପାରିଲା ନାହିଁ । ରାଜା ଉତ୍ତରରେ ସେହି ବିଷୟ ଜଣାଇ ସ୍ପଷ୍ଟଭାବେ ଲେଖିଥିଲେ, 'ସେ କୁଅଁର ବା ବିଶୋଇକୁ ସାହାଯ୍ୟ କରି ନାହାନ୍ତି । ତାହାଛଡ଼ା ସେମାନେ ଅନ୍ୟ ଜିଲ୍ଲାର ଲୋକ ହୋଇଥିବାରୁ ସେ ଦୁହିଁଙ୍କୁ ପଠାଇବା ତାଙ୍କ ପକ୍ଷେ ସମ୍ଭବ ନୁହେଁ ।'

୧୮୪୭ ଜୁଲାଇ ମାସରେ ରାଜାଙ୍କୁ ପରୱାନା ଦେଇ କଠୋର ଭାବେ ସାବଧାନ କରାଯାଇଥିଲା । ରାଜା ତାଙ୍କ ଅର୍ଜିରେ ଜଣାଇଥିଲେ ପୂର୍ବବର୍ତ୍ତୀ ସୁପରିଣ୍ଟେଣ୍ଡେଣ୍ଟ୍ ରିକେଟ୍ ଚକ୍ର ବିଶୋଇକୁ ତାଙ୍କ ରାଜ୍ୟରେ ଆଶ୍ରୟ ଦେବାକୁ ଓ ତାଙ୍କର ସମସ୍ତ ବ୍ୟବସ୍ଥା କରିବାକୁ ନିର୍ଦ୍ଦେଶ ଦେଇଥିଲେ । ମାତ୍ର ଏବେ ସେ ତାଙ୍କ ରାଜ୍ୟରେ ନାହାନ୍ତି । ଜମାଦାର କରିମବକ୍‌ସ ତାଙ୍କ ବିରୁଦ୍ଧରେ ଭୁଲ୍ ରିପୋର୍ଟ କରିଛନ୍ତି ଓ କ୍ୟାପ୍‌ଟେନ୍ ଡନ୍‌ଲପ୍‌ଙ୍କ ଅନୁସନ୍ଧାନରୁ ମାକ୍‌ଫରସନ୍‌ଙ୍କ ଅଭିଯୋଗ ଯେ ଅମୂଳକ ତାହା ପ୍ରମାଣିତ ହୋଇଅଛି । ଏହା ମଧ୍ୟ ସେ ତାଙ୍କ ଅର୍ଜିରେ ଉଲ୍ଲେଖ କରିଥିଲେ ।

ଏହି ବିଷୟର ଅନୁସନ୍ଧାନ ଲାଗି ଅଗଷ୍ଟ ୧୮୪୭ରେ ଜେ. ପି. ଗ୍ରାଣ୍ଟ୍ ନାମକ ଜଣେ ଉଚ୍ଚପଦସ୍ଥ କର୍ମଚାରୀଙ୍କୁ କଟକକୁ ପଠାଯାଇଥିଲା । ଦଶପଲ୍ଲାର ଦୁଇଟି ଗାଆଁକୁ ପୋଡ଼ିଥିବା ଓ କେତେକ ଲୋକଙ୍କୁ ହତ୍ୟା କରିଥିବା ଅନୁଗୁଳର ଆଠଜଣ

Digitized by srujanika@gmail.com

ଲୋକଙ୍କୁ କଟକ ପଠାଇବା ପାଇଁ ରାଜାଙ୍କୁ ନିର୍ଦ୍ଦେଶ ଦିଆଗଲା । ଅସୁସ୍ଥତା ଯୋଗୁଁ ସେ କଟକ ଯିବାକୁ ଅସମର୍ଥ ବୋଲି ଜଣାଇବା ସଙ୍ଗେ ସଙ୍ଗେ ସରକାର ଅନ୍ୟାୟରେ ଲୋକଙ୍କୁ ବନ୍ଦୀ କରୁଥିବାରୁ ସେମାନେ ଭୟରେ କଟକ ଯିବାକୁ ରାଜି ହେଉ ନାହାନ୍ତି ବୋଲି ଜଣାଇ ଦେଇଥିଲେ । ସେମାନେ କହୁଛନ୍ତି, "ମିଲ୍ସ୍ ସାହେବଙ୍କ ହୁକୁମ୍ ଅନୁସାରେ ତୁମ୍ଭ କହିବାରୁ ଆମେ କନ୍ଧମାଳ ଯାଇଥିଲୁ । ମାତ୍ର ସେଠାରେ ଆମେ ଯେପରି ବିପଦ ଏବଂ ଦୁଃଖଦୁର୍ଦ୍ଦଶା ଭୋଗିଲୁ ତାହା ଜୀବନରେ ଭୁଲିବୁ ନାହିଁ । ଆମେ ଆଉ ସାହେବଙ୍କ ପାଖକୁ ଯିବୁ ନାହିଁ । ତୁମ୍ଭ ପୁରୁଷାନୁକ୍ରମେ ଆମର ପ୍ରଭୁ । ତୁମ୍ଭୁ ଯେବେ ଆମକୁ ସେଠାକୁ ଯିବାକୁ ବାଧ କରିବେ, ତେବେ ତୁମ୍ଭଙ୍କ ଆଗରେ ପିଲାଛୁଆ ଧରି ଆମେ ସମସ୍ତେ ବିଷଖାଇ ମରିବୁ । କେହି ଅମଲା ଇଆଡ଼େ ଆସି ଆମର ସାକ୍ଷ୍ୟ ନିଅନ୍ତୁ । ଆମେ ମହାପ୍ରସାଦ ଧରି ଯାହା ଜାଣୁ ସତ କହିଦିବୁ । ତୁମ୍ଭ ଏହିକଥା ଲେଖିଦିଅନ୍ତୁ । ମାତ୍ର ଆମେ ସେଆଡ଼େ ଯିବୁ ନାହିଁ । ଏହାପରେ ଆଉ ମୁଁ ସେମାନଙ୍କୁ କିପରି ପଠାଇ ପାରିଥାଆନ୍ତି ? ଏହି ବିଷୟ ଗଭର୍ଣ୍ଣମେଣ୍ଟ ବିଚାର କରନ୍ତୁ ।"

ଏହିପରି ସୋମନାଥ ଥିଲେ ପ୍ରଜାବତ୍ସଳ । ନିର୍ଦ୍ଦୋଷ ପ୍ରଜାମାନଙ୍କୁ ଇଂରେଜମାନଙ୍କ ଦ୍ୱାରା ଦଣ୍ଡିତ କରାଇବାକୁ ସେ ଚାହିଁ ନ ଥିଲେ । ସେ ଯୁଗରେ ତାଙ୍କପରି ଆତ୍ମାଭିମାନୀ ରାଜା ଭାରତରେ ଖୁବ୍ କମ୍ ଥିବେ । ଆତ୍ମସମ୍ମାନବୋଧ ସମ୍ପର୍କରେ ସେ ଥିଲେ ଖୁବ୍ ସଚେତନ । କମିସନରଙ୍କ ପତ୍ରରେ ତତ୍କାଳୀନ ପରମ୍ପରାନୁଯାୟୀ ରାଜାଙ୍କୁ 'ମେହେରବାନ୍ ଦୋସ୍ତାନ୍' ସମ୍ବୋଧନ କରାଯାଇ ନ ଥିବାରୁ ସେ କ୍ଷୁବ୍ଧ ହେବା ସଙ୍ଗେ ସଙ୍ଗେ କମିଶନରଙ୍କ ଏହି କାର୍ଯ୍ୟ ବିରୁଦ୍ଧରେ ଗଭର୍ଣ୍ଣର ଜେନେରାଲଙ୍କୁ ଜଣାଇବାରେ ପଶ୍ଚାତ୍‌ପଦ ହୋଇ ନାହାନ୍ତି । ସୋମନାଥଙ୍କ ଭାଷାରେ—"ମୁଁ ଗାଦିରେ ବସିବା ଦିନଠାରୁ ଆଜି ପର୍ଯ୍ୟନ୍ତ ସରକାରଙ୍କ ଆଦେଶ ଅମାନ୍ୟ କରିନାହିଁ ବା ତାଙ୍କ ବିରୁଦ୍ଧରେ କିଛି କାର୍ଯ୍ୟ କରିନାହିଁ । ମାତ୍ର କମିଶନର ଅନ୍ୟ ଲୋକଙ୍କଠାରୁ ଖବର ଶୁଣି ମୋ ବିରୁଦ୍ଧରେ ଗଭର୍ଣ୍ଣମେଣ୍ଟଙ୍କୁ ରିପୋର୍ଟ କରୁଅଛନ୍ତି । ଗଭର୍ଣ୍ଣମେଣ୍ଟ୍ ଏସବୁ ବିଚାର କରି ଅନୁସନ୍ଧାନପୂର୍ବକ ଯିଏ ପ୍ରକୃତ ଦୋଷୀ ତାକୁ ହିଁ ଦଣ୍ଡ ଦିଅନ୍ତୁ ।" × × "ସେମାନେ ବରାବର ଆମମାନଙ୍କୁ ଉପଯୁକ୍ତ ସମ୍ମାନ ଦେଉଥିଲେ । ପ୍ରତ୍ୟେକ ପତ୍ରରେ ମଧ୍ୟ ଆମ୍ଭମାନଙ୍କୁ 'ମେହେରବାନ୍ ଦୋସ୍ତାନ୍' ବୋଲି ସମ୍ବୋଧନ କରୁଥିଲେ । ମାତ୍ର ବର୍ତ୍ତମାନ କମିଶନର ମୋତେ ଚିଠି ଲେଖିଲାବେଳେ ଏହି ସମ୍ବୋଧନ ଉଠାଇ ଦେଇ ମୋର ଅପମାନ କରିଅଛନ୍ତି ଏବଂ ମୋର ଯେପରି ସର୍ବନାଶ ହୁଏ, ସେଥିରେ ବ୍ୟବସ୍ଥା କରିଅଛନ୍ତି ମଧ୍ୟ । କାଉନ୍‌ସିଲ୍ ହାଉସ୍ ନ୍ୟାୟବିଚାରର ସ୍ଥାନ । ଯେଉଁ ଲୋକ ତାହାର ସମ୍ମାନ ହରାଇଲା, ତାହାର ଜୀବନରେ ମଙ୍ଗଳ କ'ଣ ? ମୋର କେବଳ ପ୍ରାର୍ଥନା ମୋର

Digitized by srujanika@gmail.com

ଅର୍ଜି ଉପଯୁକ୍ତ ଭାବରେ ବିଗ୍ଭର କରାଯାଉ । ତାହାହେଲେ ମୁଁ ମୋର ବର୍ତ୍ତମାନ ଦୁର୍ଭାଗ୍ୟରୁ ଉଦ୍ଧାର ପାଇବି ।"

ଏହି ପତ୍ର ହିଁ ସୋମନାଥଙ୍କ ନିର୍ଭୀକତା, ଆତ୍ମସମ୍ମାନବୋଧ ସମ୍ପନ୍ନ ବ୍ୟକ୍ତିତ୍ୱର ଏକ ଅମଳିନ ଦଲିଲ୍ ।

ଅସୁସ୍ଥତା ସମୟରେ ସରକାରୀ କର୍ତ୍ତୃପକ୍ଷ ତାଙ୍କ ବିରୁଦ୍ଧରେ ମିଥ୍ୟା ଅଭିଯୋଗ ଆଣି ତାଙ୍କୁ ବିବ୍ରତ କରୁଥିବା ଯୋଗୁଁ ସୋମନାଥ ଗଭର୍ଣ୍ଣର ଜେନେରାଲଙ୍କ ନିକଟକୁ ଆପଣାର କୈଫିୟତ ଲେଖି ତାର ଦୁଇଟି ନକଲ କଲେକ୍ଟର ଓ କମିଶନରଙ୍କ ନିକଟକୁ ପଠାଇଥିଲେ । ଏହା ମଧ୍ୟ ତାଙ୍କର ନିର୍ଭୀକତା ଓ ସ୍ୱାଧୀନ ମନୋବୃତ୍ତିର ପରିଚାୟକ ।

ଶାସକର ଅକ୍ଷମତା ଓ ଶାସନର ସୁବିଧା ଦୃଷ୍ଟିରୁ ସେ ସେହିବର୍ଷ (୧୮୪୫) ଯୁବରାଜ ବା ଗମ୍ଭିର ସାମନ୍ତ ଲୋକନାଥଙ୍କୁ ରାଜ୍ୟ ଶାସନର ଦାୟିତ୍ୱ ଅର୍ପଣ କରିଥିଲେ । ସେତେବେଳକୁ ଲୋକନାଥଙ୍କ ବୟସ ୧୯ ବର୍ଷ । ସୋମନାଥ ଯେ ବହୁ ପରିମାଣରେ ଦୋଷମୁକ୍ତ ଓ ଅଯଥା ସନ୍ଦେହର ପାତ୍ର ହୋଇଛନ୍ତି ଏହା ତତ୍କାଳୀନ କେତେକ ସ୍ୱାଧୀନଚେତା ଓ ବିଚାରବନ୍ତ ଉଚ୍ଚ ଇଂରେଜ କର୍ମଚାରୀ ମଧ୍ୟ ସ୍ୱୀକାର କରିଯାଇଅଛନ୍ତି । ତନ୍ମଧ୍ୟରୁ ସାମରିକ ଉଚ୍ଚ କର୍ମଚାରୀ ବ୍ରିଗେଡ଼ିଅର ଜେନେରାଲ ଡାଇସ୍‌ଙ୍କ ନାମ ଉଲ୍ଲେଖଯୋଗ୍ୟ । ମାତ୍ର ପୂର୍ବରୁ ସୋମନାଥଙ୍କ ସମ୍ପର୍କରେ ଭାରତ ସରକାରଙ୍କ ଯେଉଁ ଧାରଣା ଦିଆଯାଇଥିଲା ତାହାକୁ ବଦଳାଇବା ସମ୍ଭବ ନ ଥିଲା । ତା'ଛଡ଼ା ସୋମନାଥ ଗୋପନରେ କନ୍ଧନେତାଙ୍କୁ ସାହାଯ୍ୟ କରୁଛନ୍ତି ଓ ତାଙ୍କୁ ଦଣ୍ଡିତ ରାଜ୍ୟଚ୍ୟୁତ ନ କଲେ ମେରିଆ ବିରୁଦ୍ଧରେ ହେଉଥିବା କନ୍ଧମେଳିକୁ ଦମନ କରିବା ଇଂରେଜମାନଙ୍କ ପକ୍ଷେ ସମ୍ଭବ ହେବନାହିଁ ବୋଲି ମଧ୍ୟ କର୍ତ୍ତୃପକ୍ଷ ଯେଉଁ କାରଣରୁ ହେଉ ଧାରଣା କରିନେଇଥିଲେ । ସେଥିପାଇଁ ସୋମନାଥଙ୍କ ସମ୍ପର୍କରେ ବଙ୍ଗଳା ସରକାରଙ୍କ ନିଷ୍ପତ୍ତିକୁ ଅପେକ୍ଷା ନ କରି କେନ୍ଦ୍ରରୁ ସିଧାସଳଖ ନିର୍ଦ୍ଦେଶ କଟକକୁ ଆସୁଥିଲା ।

ଏହି ସମୟରେ କେନ୍ଦ୍ରରୁ ସିଧା ସୁପରିଣ୍ଟେଣ୍ଡେଣ୍ଟଙ୍କ ନିକଟକୁ ଆଦେଶ ଆସିଲା— "ରାଜାଙ୍କୁ ତୁରନ୍ତ ସାକ୍ଷୀସହ କଟକ ଡକାଅ । ଏକ ନିର୍ଦ୍ଧାରିତ ସମୟ ମଧ୍ୟରେ ସେ ନ ଆସିଲେ ତାଙ୍କୁ ବିଦ୍ରୋହୀ ବୋଲି ଘୋଷଣା କର ।" ସୋମନାଥଙ୍କୁ ତାହା ଜଣାଇ ଦିଆଗଲା । ମାତ୍ର ଏପରି ପତ୍ର ପାଇବା ପରେ ମଧ୍ୟ ସୋମନାଥ ଅବିଚଳିତ ଓ ନିର୍ଭୀକ ଭାବେ ସରକାରଙ୍କୁ ଜଣାଇଥିଲେ—"ମୋ ଶତ୍ରୁମାନଙ୍କ କଥାକୁ ବିଶ୍ୱାସ କରାଯାଇ ମୋତେ ଅକାରଣରେ ଦୋଷୀ ବୋଲି କୁହାଯାଉଛି—ଏତଦ୍ୱାରା ସରକାର ଆଦୌ ନ୍ୟାୟ କରୁନାହାନ୍ତି ।" ଏଭଳି ଉତ୍ତର ଓ ଆଚରଣର ପରିଣାମ ସେ ଅବଶ୍ୟ ହୃଦୟଙ୍ଗମ କରିଥିବେ । ସେହିପରି ପ୍ରଜାମାନଙ୍କୁ ପଠାଇବାର ଉଦ୍ଦେଶ୍ୟ



Digitized by srujanika@gmail.com

ସେ ବେଶ ଜାଣିପାରିଥିଲେ । ପ୍ରଜାବତ୍ସଳ ସୋମନାଥ ଆପଣାର ପ୍ରଜାଙ୍କୁ ଜାଣି ଜାଣି ବିପଦାପନ୍ନ କରିବାକୁ ଶ୍ରେୟସ୍କର ମଣିନାହାନ୍ତି । ଯାହାହେଉ, ଏହା ଫଳରେ ସୋମନାଥଙ୍କ ଜୀବନରେ ଅନତି ବିଳମ୍ବେ ଦୁର୍ଯୋଗ ଘନେଇ ଆସିଲା ।

କବି ନୃସିଂହଗୁରୁଙ୍କ ବର୍ଣ୍ଣନାରୁ ମଧ୍ୟ ତାହା ଜଣାଯାଏ । କେତେକ ପ୍ରଜା ଖୁଣୀ ଆସାମୀମାନଙ୍କୁ ଇଂରେଜ କର୍ତ୍ତୃପକ୍ଷଙ୍କୁ ଅର୍ପଣ କରିଦେବାକୁ ପରାମର୍ଶ ଦେଇଥିଲେ । ମାତ୍ର ରାଜା ନିଜ ସଙ୍କଳ୍ପରେ ଥିଲେ ଅଟଳ । ଆପଣାର ଯାହାହେଉ ପଛକେ ପ୍ରଜାମାନଙ୍କୁ ସେ ବିପଦ ମୁହଁକୁ ଠେଲିଦେବାକୁ ନ୍ୟାୟୋଚିତ ମନେକରି ନ ଥିଲେ । କବି ରାୟଗୁରୁଙ୍କୁ ଇଂରେଜମାନଙ୍କୁ ମିଥ୍ୟା ଦୋଷାରୋପକାରୀ ବୋଲି ଅଭିହିତ କରିଅଛନ୍ତି—'ନରପତି ଲୋକକୋ ଦୋଷ ଲଗାନା କମ୍ପନି ଜାତି ସ୍ୱଭାବ ।' ରାଜାଙ୍କ ଅଧଃପତନ ପାଇଁ କବି ଜଗନ୍ନାଥ ଯାତ୍ରୀମାନଙ୍କୁ ନିଧନ ବୋଲି ଯାହା ବର୍ଣ୍ଣନା କରିଛନ୍ତି ତାହା ବିଶ୍ୱାସଯୋଗ୍ୟ ନୁହେଁ (୧) । ସୋମନାଥ କୁମନ୍ତ୍ରଣାରେ ପଡ଼ି କ୍ରୋଧୀ ହେଲେ ଓ ଦୁର୍ଭାଗ୍ୟବଶତଃ ତାଙ୍କ ଭଳି ବୀର ଓ ଗୁଣବାନ ରାଜା ସମସ୍ତ ସଦ୍‌ଗୁଣ ହରାଇ ବସିଥିଲେ ବୋଲି ମଧ୍ୟ କବି ବର୍ଣ୍ଣନା କରିଛନ୍ତି । (୨)

୧୮୪୭ ଡ଼ିସେମ୍ବର ମାସରେ ଅନୁଗୁଳକୁ ଖାସ୍ କରାଗଲା ବୋଲି କଲିକତାଠାରେ ଘୋଷିତ ହେଲା । ୧୮୪୮ ଜାନୁୟାରୀ ମାସରେ କର୍ଣ୍ଣେଲ କ୍ୟାମ୍ପ୍‌ବେଲ୍ ଅନୁଗୁଳ ଫିଲ୍ଡ଼ ଫୋର୍ସ୍‌ର ଅଧିନାୟକ ଭାବେ ନିଯୁକ୍ତ ହେଲେ ଓ ତାହାଙ୍କ ନିର୍ଦ୍ଦେଶରେ ଏକ ବିରାଟ ସାମରିକ ବାହିନୀ ଅନୁଗୁଳ ଅଭିମୁଖେ ପ୍ରେରିତ ହେଲା । ଅନୁଗୁଳରେ ଏଠିତେଠି ସାମାନ୍ୟ ପ୍ରତିରୋଧ ହୋଇଥିଲେ ହେଁ କେଉଁଠି ବିଧିବଦ୍ଧ ଯୁଦ୍ଧ ହୋଇ ନ ଥିଲା । ବାମଣ୍ଡା ରାଜାଙ୍କ ସହାୟତାରେ ସୋମନାଥ ଧୃତ ହେଲେ । ଯେଉଁ ପ୍ରଜାମାନଙ୍କ ଲାଗି ସେ ଇଂରେଜ ସରକାରଙ୍କ ଶତ୍ରୁ ବିବେଚିତ ହୋଇଥିଲେ, ସେଇ ପ୍ରଜାମାନଙ୍କ ମଧ୍ୟରୁ କେତେକ ତାଙ୍କୁ ଧରେଇ ଦେବାରେ ସରକାରଙ୍କୁ ସହାୟତା କରିଥିଲେ । ଶୁଣାଯାଏ ରାଜାଙ୍କୁ

---

(୧) 'ବିଷ୍ଣୁ ଭକ୍ତ ପ୍ରିୟଜନେ ବଧିଲେ ଯହିଁ
ଦ୍ୱିଜ କବିଚନ୍ଦ୍ର ବୋଲେ ଆଉ ରକ୍ଷା ନାହିଁ ।' (ରୁ ପୋଥୀ ରୁ ୬/୨୦ ପଦ)

(୨) 'ସୋମନାଥ ରାଜ ଚନ୍ଦ୍ରମା ଭାଙ୍ଗନ୍ତି ଅରି ଗରିମା
କର୍ମ ବିକଳକାଳକୁ ଦଇବେ କି ଯୋଗକୁ
ଛାଡ଼ିଲେ ସବୁ ଗୁଣସୀମାହେ ସାଧୁଜନେ ।
(ରୁ ପୋ-ରୁ ୧୭/୨ ପଦ)

Digitized by srujanika@gmail.com

ଇଂରେଜମାନେ ବନ୍ଦୀ କରି ନେବାବେଳେ କୁଆଡ଼େ ସେ ବଡ଼କେରା ଗ୍ରାମ ନିକଟରେ ଅତି ଦୁଃଖରେ କହିଥିଲେ ଏ ରାଜ୍ୟର କେବେ ମଙ୍ଗଳ ହେବ ନାହିଁ । ଏକଥା ଏବେ ମଧ୍ୟ ଗ୍ରାମବାସୀଙ୍କଠାରୁ ଶୁଣିବାକୁ ମିଳେ । ଫେବୃୟାରୀ ମାସରେ ବନ୍ଦୀଭାବେ ତାଙ୍କୁ ସପରିବାର କଟକ ଅଣାଗଲା । ପ୍ରଥମେ କଟକ ପଲଟନ ଲାଇନ ନିକଟରେ ଟ ୩୫ଙ୍କା ଭଡ଼ାରେ ଏକ ବଙ୍ଗଳାରେ ତାଙ୍କୁ ରଖା ଯାଇଥିଲା । ଇତି ପୂର୍ବରୁ ତାଙ୍କ ପୁତ୍ର ଯୁବରାଜ ଲୋକନାଥ ଅନୁଗୁଳରୁ ଆସି କଟକ କମିସନରଙ୍କ ନିକଟରେ ଯେ· କାହିଁକି ଆଶ୍ରୟପ୍ରାର୍ଥୀ ହେଲେ, ତାହାର ହେତୁ ବୁଝି ହୁଏ ନାହିଁ । ସମ୍ଭବତଃ ଦୁର୍ବଳମନା ଲୋକନାଥ ରାଜ୍ୟଲାଭ ଆଶାରେ ଇଂରେଜମାନଙ୍କ ଚକ୍ରାନ୍ତରେ ପଡ଼ି ଯାଇଥିଲେ । ରାଜାଙ୍କ ସହ ସେତେବେଳେ ସେଇ ବଙ୍ଗଳାରେ ରହୁଥିଲେ ପାଞ୍ଚଜଣ ରାଣୀ, ୩ ଜଣ ଅନ୍ତର ପୁଅ, ୧୦ ଜଣ ଦାସୀ, ୮ ଜଣ ଚାକର, ୪ ଜଣ ମେହେନ୍ତର ୩ ଜଣ ମେହେନ୍ତରାଣୀ ଓ ୪ ଜଣ ଧୋବା । ଏଥିପାଇଁ ଘରଭଡ଼ା ସମେତ ଟ ୪୦୬ଙ୍କା ଖର୍ଚ୍ଚର ବ୍ୟବସ୍ଥା କରାଯାଇଥିଲା ।

୧୮୪୮ ମସିହା ଶେଷଭାଗରେ ରାଜାଙ୍କୁ ସପରିବାର ମିଲିଟାରୀ ଫୌଜଙ୍କ ତତ୍ତ୍ୱାବଧାନରେ ହଜାରିବାଗ ପଠାଗଲା ଓ ସେଠାରେ ମିଲିଟାରୀ ଲାଇନ ନିକଟବର୍ତ୍ତୀ ଏକ ବଙ୍ଗଳାରେ ସେ ମୃତ୍ୟୁ ପର୍ଯ୍ୟନ୍ତ ଅନ୍ତରୀଣ ବନ୍ଦୀ ଭାବରେ ଅବସ୍ଥାନ କରିଥିଲେ ।

ସୋମନାଥ ବନ୍ଦୀ ଭାବରେ ହଜାରିବାଗରେ ଥିବା ସମୟରେ ମଧ୍ୟ ଅନୁଗୁଳର ପ୍ରଜାମାନେ ତାଙ୍କ ପ୍ରତି ଅନୁଗତ ଥିବା ଜଣାଯାଏ । କେହି କେହି ପ୍ରଜା ତୀର୍ଥାଟନ କାଳରେ ସୁଦୂର ହଜାରିବାଗକୁ ଯାଇ ରାଜାଙ୍କ ଦର୍ଶନ କରି ଆସିଥିବା ଜଣା-ଯାଇଅଛି । ମାତ୍ର ଏହା ଫଳରେ ସରକାର ସୋମନାଥଙ୍କ ଲାଗି ନିୟୋଜିତ ପ୍ରହରୀ ବ୍ୟବସ୍ଥାକୁ ଅଧିକ କଠୋର କରିଥିଲେ । ବନ୍ଦୀ ଅବସ୍ଥାରେ ସୋମନାଥଙ୍କ ପ୍ରତି ଇଂରେଜ ସରକାର କପରି ହୃଦୟହୀନ ଥିଲେ ଏଥିରୁ ଅନୁମେୟ ।

ଇଂରେଜ ସରକାର ସୋମନାଥଙ୍କ ପୁତ୍ର ପ୍ରତି ଚରମ ନିଷ୍ଠୁରତା ପ୍ରଦର୍ଶନ କରିଛନ୍ତି । ସୋମନାଥଙ୍କୁ ନାନା ଆଳରେ ବନ୍ଦୀ କରିବା ସଙ୍ଗେ ସଙ୍ଗେ ଲୋକ-ନାଥଙ୍କୁ ମଧ୍ୟ ସେମାନେ ରାଜଗାଦୀ ଦେଇ ନ ଥିଲେ । ତାଙ୍କୁ ରାଜ ଭାବେ ସ୍ୱୀକାର ନ କରିବାର କୌଣସି ସଙ୍ଗତ କାରଣ ନ ଥିଲା । ଇଷ୍ଟଇଣ୍ଡିଆ କମ୍ପାନୀ ସରକାର ଅନୁଗୁଳକୁ ଖାସ ଦଖଲକୁ ନେବା ଲାଗି କପରି ଦୃଢ଼ପରିକର ଥିଲେ ତାହା ଏଥିରୁ ଜଣାଯାଏ । ରାଜ୍ୟଲିପ୍ସୁ ଇଂରେଜମାନେ ଏହି ମହାନୁଭବ ସ୍ୱାଧୀନ ମନୋବୃତ୍ତି-ସମ୍ପନ୍ନ ରାଜା ଓ ତାହାଙ୍କ ପରିବାରବର୍ଗଙ୍କ ପ୍ରତି ଯେ ସେ ଯୁଗରେ ଚରମ ଅବିଚାର କରିଛନ୍ତି ଏ ବିଷୟରେ ସନ୍ଦେହର ଅବକାଶ ନାହିଁ । ସେ ସମୟରେ

Digitized by srujanika@gmail.com

ବୌଦରାଜା କନ୍ଧମାଳରେ ମେରିଆ ବଳି ବନ୍ଦ କରିବାକୁ ସମର୍ଥ ହୋଇ ପାରି ନ ଥିଲେ । ମାତ୍ର ସେଥିପାଇଁ ତାଙ୍କୁ ଦଣ୍ଡିତ ନ କରି ସୋମନାଥଙ୍କୁ ଦଣ୍ଡିତ କରିବା ଯେ ସମ୍ପୂର୍ଣ୍ଣ ଅନ୍ୟୋଶମୂଳକ ଏହା ଅତୀବ ସ୍ପଷ୍ଟ । ଏହାପରେ ସେ ସମସ୍ତରେ ବିଦ୍ରୋହୀ ଘୋଷି । ଓ କନିକା ରାଜାଙ୍କୁ କଟକରେ ବନ୍ଦୀ କରାଯାଇ ଥିଲେ ହେଁ ଅଥବା ସୋମନାଥଙ୍କୁ ହଜାରିବାଗ ପଠାଯାଇ ଥିଲା ।

ସେତେବେଳେ ଭାରତର ଗଭର୍ଣ୍ଣର ଜେନେରାଲ ଥିଲେ ଲର୍ଡ଼ ଡେଲ୍ହାଉସି । ଅନୁଗୁଳକୁ ଖାସ କରି ସେ ବେଶ୍ ଗର୍ବ ଓ ଆନନ୍ଦର ସହିତ ଲେଖିଥିଲେ— 'ଆଦିବାସୀମାନଙ୍କ ମଧ୍ୟରେ ପ୍ରଚଳିତ ମେରିଆ ବଳୀ କୁସଂସ୍କାରକୁ ଦବାଇବାକୁ ଯାଇ ସରକାର ଏଭଳି ପଦକ୍ଷେପ ନେବା ଦ୍ୱାରା ଏହା ଆଦିବାସୀମାନଙ୍କ ପକ୍ଷେ ଏକ ଚେତାବନୀ ଭଳି ହେବ, ସେମାନେ ଇଂରେଜମାନଙ୍କ ବିରୁଦ୍ଧରେ ଆଉ ସଂଗଠିତ ଆନ୍ଦୋଳନ କରିବାକୁ ସାହସୀ ହେବେ ନାହିଁ ।'' ମାତ୍ର ପ୍ରକୃତରେ ସୋମନାଥଙ୍କର ନରବଳି ବ୍ୟାପାର ସହ କୌଣସି ସମ୍ପର୍କ ନ ଥିଲା ।

ଅନୁଗୁଳକୁ ଖାସ୍ କଲାପରେ ସୋମନାଥଙ୍କ ମୁଖ୍ୟ ବିଶ୍ୱସ୍ତ ସରଦାର ସିନ୍ଧୁ ଗଡ଼ନାୟକ ଓ ଆଉ ତିନି ଜଣଙ୍କୁ ଯାବଜ୍ଜୀବନ କାରାବାସ ଦଣ୍ଡ ଦିଆଗଲା ଏବଂ ନଅ ଜଣଙ୍କୁ ଚଉଦ ବର୍ଷ ବନ୍ଦୀ ହେବା ଆଦେଶ ମିଳିଲା । ଆଦିବାସୀ ସରଦାରଙ୍କୁ ଭୟଭୀତ ବା ସାବଧାନ କରାଇବା ଉଦ୍ଦେଶ୍ୟରେ ଡେଲ୍ହାଉସୀଙ୍କର ଏପରି ପଦକ୍ଷେପ ପଛରେ କୌଣସି ସଙ୍ଗତ କାରଣ ନ ଥିଲା । ତଥାପି ଅନୁଗୁଳର ଅବସ୍ଥିତି ଏହାକୁ ସେମାନଙ୍କ ଅଧିକାରଭୁକ୍ତ କରାଇବା ଲାଗି ଶାସକବର୍ଗଙ୍କୁ ପ୍ରଲୁବ୍ଧ କରିଥିବା ସ୍ୱାଭାବିକ । ଏହାଦ୍ୱାରା ମହାନଦୀ ଅବବାହିକାର ଆଦିବାସୀ ଅଧ୍ୟୁଷିତ ଅଞ୍ଚଳକୁ ଶାସନ କରିବା ଥିଲା ଅଧିକ ସୁବିଧାଜନକ ।

ବନ୍ଦୀ ରାଜପରିବାରକୁ ମାସିକ ଟ ୩୪୦ ଙ୍କା ଭତ୍ତା ମିଳୁଥିଲା । ସମ୍ଭବତଃ ଅତ୍ୟନ୍ତ ଦୁଃଖରେ ପଡ଼ି ୧୮୪୯ରେ ରାଜା ଅବରୋଧରୁ ମୁକ୍ତ ପାଇବା ଲାଗି ଏକ ଆବେଦନ କରିଥିଲେ । ତାକୁ ନାକଚ କରିଦିଆଗଲା । ଏହାପରେ ରାଜାଙ୍କ ପ୍ରତି ପ୍ରୟୋଗ କରାଯାଇଥିବା କେତେକ କଟକଣା କୋହଳ କରିବା ବ୍ୟତୀତ ସୋମନାଥଙ୍କୁ ଆଉ କିଛି ମିଳି ନ ଥିଲା । ରାଜା ସୋମନାଥ ନିଜ ପାଇଁ ସେଠାରେ ଏକ ବଙ୍ଗଳା କିଣିଥିଲେ । ବନ୍ଦୀ ଅବସ୍ଥାରେ ସେ କିପରି ସେଠାରେ କାଳ ଅତିବାହିତ କରୁଥିଲେ ତାର କୌଣସି ଇତିବୃତ୍ତ ମିଳିପାରି ନାହିଁ । ସୋମନାଥଙ୍କର ଜୁନ୍ ୧୮୫୩ ମସିହାରେ ମୃତ୍ୟୁ ହେଲା । ତାଙ୍କ ପରିବାରବର୍ଗଙ୍କୁ ଖ୍ରୀ ୧୮୬୮ ରେ କଟକ ଆସିବାକୁ ଅନୁମତି ମିଳିଲା । ଲୋକନାଥ ପୁରୀରେ ନିଃସଙ୍ଗ ଓ କରୁଣ ଜୀବନଯାପନ କରି ଶେଷ ନିଃଶ୍ୱାସ ତ୍ୟାଗ କରିଥିଲେ ।

Digitized by srujanika@gmail.com

## ରାଜକବି ସୋମନାଥ

ସୋମନାଥ ଯେପରି ଥିଲେ ବୀର, ଆତ୍ମାଭିମାନୀ, ନିର୍ଭୀକ ଓ ପ୍ରଜାବତ୍ସଳ ସେହିପରି ଥିଲେ ଗୁଣଗ୍ରାହୀ ଓ କାବ୍ୟଶାସ୍ତ୍ରାନୁରାଗୀ । ତାହାଙ୍କ ସଭାରେ ବହୁ କବି ମଧ୍ୟ ସମ୍ମାନିତ ଆସନ ଲାଭ କରିଥିଲେ । ତାହାଙ୍କ ରାଜତ୍ୱ କାଳରେ ଅନୁଗୁଳର ବ୍ରଜବନ୍ଧୁ ସାମନ୍ତସିଂହାର କାବ୍ୟକବିତା ରଚନାରେ ଥିଲେ ସୁପ୍ରସିଦ୍ଧ । ତାହାଙ୍କ ରାଜସଭାର ଅନ୍ୟତମ କବି ଥିଲେ ନୃସିଂହ କବିଚନ୍ଦ୍ର ରାୟଗୁରୁ । ସେ ସୋମନାଥଙ୍କ ବୀରତ୍ୱ ପ୍ରସଙ୍ଗରେ 'ବୁଢ଼ାପଙ୍କ ଯୁଦ୍ଧପୋଥୀ' ବା 'ରାଜା ସୋମନାଥ ସିଂହ ଜଗଦେବ' ନାମକ ଏକ ଗ୍ରନ୍ଥକାବ୍ୟ ରଚନା କରିଥିବା ବିଷୟ ପୂର୍ବରୁ ବର୍ଣ୍ଣିତ ହୋଇଅଛି । ଏହି କାବ୍ୟର ଆଲୋଚନା ପ୍ରସଙ୍ଗରେ ଗବେଷକ ଶ୍ରୀ ସୁଧାକର ପଟ୍ଟନାୟକ ଲେଖିଛନ୍ତି—

"ସୋମନାଥ ସିଂହ ଜଣେ ମହାତେଜସ୍ୱୀ ଓ ଶକ୍ତିଶାଳୀ ଶାସକ ଥିଲେ । ସଙ୍ଗୀତ, ସାହିତ୍ୟ ଆଲୋଚନା ଆଦିରେ ମଧ୍ୟ ତାଙ୍କର ଉତ୍ସାହ ଥିଲି ବୋଲି ଶୁଣାଯାଏ ଏବଂ ଆଜି ସୁଦ୍ଧା 'ଅନୁଗୋଳ ନୃପତି ସୋମନାଥ ଭୂପ' ଭଣିତାରେ କୌଣସି କୌଣସି ସଙ୍ଗୀତ ଦେଖାଯାଏ । ମାତ୍ର ତାଙ୍କର ରାଜନୈତିକ କର୍ମମୟ ଜୀବନ ମଧ୍ୟରେ ତାଙ୍କୁ ସତତ ଚିନ୍ତାକୁଳ ରହିବାକୁ ପଡ଼ୁଥିଲି ବୋଲି ମନେହୁଏ । X X X ଏଣୁ ସାହିତ୍ୟ କ୍ଷେତ୍ରରେ ବାସ୍ତବିକ ତାଙ୍କର କେତେଦୂର ଗତିବିଧି ଥିଲି, ଠିକ୍ କୁହାଯାଇ ପାରୁନାହିଁ । (୧)

ସୋମନାଥଙ୍କ ଗୀତ ରଚନା ବିଷୟରେ ଶ୍ରୀଯୁକ୍ତ ପଟ୍ଟନାୟକ ଦୃଢ଼ ନିଶ୍ଚିତ ହୋଇପାରି ନ ଥିଲେ ହେଁ ଅତୀତରେ କେହି କେହି ଆଲୋଚକ ଓ ସଙ୍କଳୟିତା ସୋମନାଥଙ୍କ ଗୀତ ରଚନା ବିଷୟରେ ଅବହିତ ଥିବା ଜଣାଯାଏ । ଢେଙ୍କାନାଳର ଅଧିବାସୀ ତଥା ଓଡ଼ିଆ ସଙ୍ଗୀତର ବିଶିଷ୍ଟ ସଙ୍କଳୟିତା ଦାମୋଦର ପଟ୍ଟନାୟକ ତାହାଙ୍କ ସଙ୍ଗୀତ ସାଗର'ର ୨ୟ, ୩ୟ ଓ ୭ମ ଭାଗରେ ( ପ୍ରଥମ ପ୍ରକାଶକାଳ ଯଥାକ୍ରମେ ୧୮୯୦, ୧୮୯୩, ୧୯୦୩ ) ସୋମନାଥଙ୍କ ତିନିଗୋଟି ଗୀତ ସନ୍ନିବିଷ୍ଟ କରିଥିଲେ (୨) । ବିଜୟ ଚନ୍ଦ୍ର ମଜୁମଦାର ତାହାଙ୍କ ସଂପାଦିତ Tipecal Selections from Oriya Literature ର ୨ୟ ଖଣ୍ଡରେ (ପ୍ରଥମ ପ୍ରକାଶ ୧୯୨୩) ସୋମନାଥଙ୍କ ଗୋଟିଏ ଗୀତ ସଂଯୋଜନ କରିଅଛନ୍ତି । ଏତଦ୍‌ବ୍ୟତୀତ

---

(୧) ରାଜା ସୋମନାଥ ସିଂହ ଜଗଦେବ—ସଂ-ସୁଧାକର ପଟ୍ଟନାୟକ—ଭୂମିକା—ପୃ-୧୫

(୨) ଏହି ଗୀତଗୁଡ଼ିକର ଆଦ୍ୟଛତ୍ର ଯଥାକ୍ରମେ ହେଉଛି—"ନାହା ରହିଲେ କାହା ସଦନେ ଗୋ" (୩ୟ) "ଗୁହାଁ ପ୍ରାଣ ଈଶ୍ୱରୀରେ" (୭ମ), "ଗୁଡ଼ ହେ ପାଣି (୨ୟ)

Digitized by srujanika@gmail.com

ସୋମନାଥ ଶୃଙ୍ଗାର ରସାତ୍ମକ ସଙ୍ଗୀତପୂର୍ଣ୍ଣ 'ସଙ୍ଗୀତମାଳା' ନାମକ ଏକ ପୁସ୍ତକ ରଚନା କରିଥିବା ବିଷୟ ବିଶିଷ୍ଟ ଆଲୋଚକ ଜଗବନ୍ଧୁ ସିଂହ ସ୍ୱୀକାର କରିଅଛନ୍ତି (୧) । ପ୍ରାଚୀ ସମିତି ମଧ୍ୟ ୧୯୩୦-୩୩ ମଧ୍ୟରେ ସୋମନାଥଙ୍କର ବହୁ ରଚନା ସଂଗ୍ରହ କରିଥିଲେ । ଏହିପରି ଭାବେ ସୋମନାଥ ସିଂହଙ୍କ ସଙ୍ଗୀତାବଳୀ ବିଗତ ପ୍ରାୟ ଏକଶହ ବର୍ଷ ମଧ୍ୟରେ ସୀମିତ ପରିସରରେ ହେଉ ପଛକେ ସୁଧୀ ସମାଜର ଦୃଷ୍ଟି ଆକର୍ଷଣ କରିପାରି ଅଛି । ମାତ୍ର ଶତାଧିକ ବର୍ଷ ମଧ୍ୟରେ ସେଗୁଡ଼ିକୁ ସଂଗ୍ରହ କରିବାର କୌଣସି ବିଧିବଦ୍ଧ ଉଦ୍ୟମ ହୋଇ ନାହିଁ ! ସଂପ୍ରତି ଏଇ ଲେଖକ ସେଗୁଡ଼ିକୁ ସଂକଳିତ କରିବାରେ ଯତ୍ନକଳ୍ପିତ ପ୍ରୟାସ କରିଅଛି । ସଂକଳିତ ଗୀତ ମଧ୍ୟରୁ ପ୍ରାୟ ୬୫ଟି ଗୀତ କମାପଡ଼ା ଅଞ୍ଚଳରୁ ସଂଗୃହୀତ । ସୋମନାଥଙ୍କର ମାତା କମାପଡ଼ାର ରାଏଟ ସିଂହ ପରିବାରର କନ୍ୟା ଥିଲେ । ପରବର୍ତ୍ତୀ କାଳରେ ସୋମନାଥଙ୍କ ପୁତ୍ରବଧୂ ମଧ୍ୟ ରାଏଟ ସିଂହ ପରିବାରରୁ ଯତ୍ନକଳ୍ପିତ ସାହାଯ୍ୟ ପାଇ ପୁରୀରେ ଅବସ୍ଥାନ କରୁଥିଲେ । ଏହି ସଂପର୍କ ଯୋଗୁ ସୋମନାଥଙ୍କ କେତେକ ଗୀତ କମାପଡ଼ା ଅଞ୍ଚଳକୁ ଯାଇଥିବା ସମ୍ଭବପର । ପ୍ରାଚୀ ସମିତି ଓ ଲେଖକର ସଂଗ୍ରହକୁ ମିଶାଇ ସୋମନାଥ ସିଂହଙ୍କ ପ୍ରାୟ ଦେଢ଼ଶହ ଗୀତ ଏହି ସଂକଳନରେ ସନ୍ନିବିଷ୍ଟ ହୋଇଛି ।

ପ୍ରାୟ ସମସ୍ତ ଗୀତର ଭଣିତାରେ 'ଅନୁଗୁଳ ଭୂପ' ବୋଲି ସ୍ପଷ୍ଟ ଭାବରେ ଉଲ୍ଲିଖିତ ହୋଇଥିବାରୁ ଗୀତଗୁଡ଼ିକ ଯେ ଅନୁଗୁଳ ରାଜା ସୋମନାଥ ସିଂହଙ୍କ ରଚନା, ଏ ବିଷୟରେ ଆଦୌ ସନ୍ଦେହ ଜନ୍ମେ ନାହିଁ । ମାତ୍ର ଗୀତଗୁଡ଼ିକରେ ତତ୍କାଳୀନ ଇଂରେଜ ଶାସନ ମତି ପ୍ରତି କଟାକ୍ଷ ଅଥବା ଆପଣାର ରାଜନୈତିକ ଦୁର୍ଗତିର ଚିତ୍ର କେଉଁଠି ପ୍ରତିଫଳିତ ହୋଇନାହିଁ । ସେ ଯୁଗରେ ରାଜଦରବାରରେ ପ୍ରତିପୋଷିତ କବିମାନେ ପୃଷ୍ଠପୋଷକ ରାଜାମାନଙ୍କ ନାମରେ ମଧ୍ୟ ସ୍ୱରଚିତ ରଚନା-ମାନଙ୍କୁ ଭଣିତା କରୁଥିଲେ । ଏହି ଦୃଷ୍ଟିରୁ ଏହି ରଚନାବଳୀ ସୋମନାଥଙ୍କ ରଚନା ଅଥବା ତତ୍କାଳୀନ କେଉଁ କବି ସବୁଦିନ ପାଇଁ ଆତ୍ମବିସ୍ମୃତ ହେବାଲାଗି ଏଗୁଡ଼ିକୁ ସୋମନାଥଙ୍କ ନାମରେ ଭଣିତା କରି ଯାଇଛନ୍ତି, ତାହା ଜାଣିବା ସମ୍ଭବ ନୁହେଁ । ଗୀତଗୁଡ଼ିକ ସୋମନାଥ ଏକ ନିର୍ଦ୍ଦିଷ୍ଟ ସମୟ ମଧ୍ୟରେ ରଚନା କରିଥିବା ମଧ୍ୟ ସମ୍ଭବପର ।

ଗୀତଗୁଡ଼ିକୁ ସଂପାଦନା କରିବା ଅବକାଶରେ ସେଗୁଡ଼ିକୁ ବିଭିନ୍ନ ପର୍ଯ୍ୟାୟରେ ସଜ୍ଜିତ କରାଯାଇଅଛି ଓ ସେଗୁଡ଼ିକର ଶୀର୍ଷକ ପ୍ରସ୍ତୁତ କରାଯାଇଛି । ମୂଳ ଲେଖାରେ ଯେ ସେଗୁଡ଼ିକ ନିର୍ଦ୍ଦେଶିତ ହୋଇ ନ ଥିଲା ଏହା ଲେଖିବା ବାହୁଲ୍ୟ ମାତ୍ର ।

---

(୧) ପ୍ରାଚୀନ ଉତ୍କଳ – ପୃ–୧୬୬

Digitized by srujanika@gmail.com

ଲେଖକ ଓଡ଼ିଆ ଗୀତକାବ୍ୟ ସମ୍ପର୍କରେ ଅନୁଶୀଳନ କରୁଥିବା ବେଳେ ପ୍ରାୟ ୧୦-୧୨ ବର୍ଷ ପୂର୍ବେ ଏଗୁଡ଼ିକ ସଂଗ୍ରହ କରିବାକୁ ସମର୍ଥ ହୋଇଥିଲି । ମାତ୍ର ସେଗୁଡ଼ିକୁ ସଙ୍ଗେ ସଙ୍ଗେ ମୁଦ୍ରିତ କରାଇବା ନାନା କାରଣରୁ ସମ୍ଭବ ହୋଇପାରି ନ ଥିଲା । ବହୁବର୍ଷ ଧରି ଉପେକ୍ଷିତ ସେହି ସୋମନାଥ ରଚନାବଳୀର ଜୀର୍ଣ୍ଣ ପାଣ୍ଡୁଲିପି ମଧ୍ୟରୁ କେତେକ ଗୀତକୁ ପାଇବାକୁ ଅଧୁନା ସମ୍ଭବ ହେଉନାହିଁ । ସେହି ପାଣ୍ଡୁଲିପିରୁ ସୋମନାଥଙ୍କ ଯେଉଁ ଗୀତଗୁଡ଼ିକର ସନ୍ଧାନ ମିଳୁନାହିଁ ତାହାର ଆଦ୍ୟଛତ୍ର ହେଲା—(୧) କମ୍ପାଇ ଅଧର ମଧୁର (୨) କେଉଁ ପୁରୁଷ କୋଳେ (୩) ମୋହନ ନୟନାରେ ଶ୍ୟାମ (୪) ରାଜ ରାଜ ସୁତ ବଂଶୀ (୫) ସଙ୍ଗିନୀ ସ୍ୱାମୀ ଗଲେ ବିଦେଶ (୬) କଣ୍ଠେ ତେ ଦୟା ମୋ ଘେନ (୭) କହି କନକଗୋରୀ (୮) କହିବ ପ୍ରାଣସଖିକ (୯) ଯେତେ ଉପାୟ ମୁଁ ।

ସୋମନାଥଙ୍କ ରଚିତ ଗୀତମାନଙ୍କୁ ମୁଖ୍ୟତଃ ଚାରି ଭାଗରେ ବିଭକ୍ତ କରାଯାଇପାରେ । ସେଗୁଡ଼ିକ ହେଉଛି (କ) ଦୁଇଟି ଚଉତିଶା, (ଖ) ତେରଟି ଆଖ୍ୟାନ ସମ୍ବଳିତ ଦେବୀ ମାହାତ୍ମ୍ୟ ବା ମାଳଶ୍ରୀ ଓ (ଗ) ଚାରିଗୋଟି ଭକ୍ତିଗୀତିକା, ନବେଟି କୃଷ୍ଣଲୀଳାତ୍ମକ ଗୀତ ଓ (ଘ) ତେୟାଳିଶ ଗୋଟି ଲୌକିକ ଆଦିରସାତ୍ମକ ଗୀତ । ସୁନ୍ଦରୀ ଚଉତିଶାଟି ଶ୍ରୀକୃଷ୍ଣ ଓ ଶ୍ରୀରାଧାଙ୍କ ଉକ୍ତିପ୍ରତ୍ୟୁକ୍ତିମୂଳକ । ଶ୍ରୀକୃଷ୍ଣଙ୍କ ଶ୍ରୀରାଧାଙ୍କ ପ୍ରତି ଚାଟୁକ୍ତି ଓ ଶ୍ରୀରାଧାଙ୍କ ପ୍ରତ୍ୟୁତ୍ତର ଏହି ଚଉତିଶାରେ ବର୍ଣ୍ଣିତ ( 'ଠ' ପଦରୁ 'ବ' ପଦ ପର୍ଯ୍ୟନ୍ତ ) । ଚଉତିଶାଟିରେ ରୀତିକାବ୍ୟର ପ୍ରଭାବ ସୁସ୍ପଷ୍ଟ । ଓଡ଼ିଆ ଚଉତିଶା ଭଣିତାର ଏକ ନିର୍ଦ୍ଦିଷ୍ଟ ବିଧି ଏଥିରେ ଅନୁସୃତ ହୋଇଅଛି । କବିଙ୍କ ଭଣିତା ଶେଷ ପଦରେ ନିହିତ ଥିବା ବ୍ୟତୀତ ଦ୍ୱାଦଶ ଓ ଚତୁର୍ବିଂଶ ପଦରେ ମଧ୍ୟ ତାହାଙ୍କ ନାମୋଲ୍ଲେଖ ଦେଖିବାକୁ ମିଳେ ।

ରାଧାକୃଷ୍ଣ ଲୀଳାତ୍ମକ ଗୀତରେ ରାଧାକୃଷ୍ଣଙ୍କର ନବାନୁରାଗ, ବିରହାନୁଚିନ୍ତା, ବିରହୋତ୍କଣ୍ଠା, ଚାଟୁ, ବଂଶୀବିଭବ, ହୋରି ପ୍ରଭୃତି ପ୍ରସଙ୍ଗ ଉକ୍ତିପ୍ରତ୍ୟୁକ୍ତି ଛଳରେ ଗତାନୁଗତିକ ରୀତିରେ ବର୍ଣ୍ଣିତ ।

ଲୌକିକ ପ୍ରେମଗୀତିକାଗୁଡ଼ିକ ଅଧିକାଂଶ ନାୟକର ଅନୁଭୂତିମୂଳକ । କେବଳ ଗୋଟିଏ ଗୀତରେ ଅଭିମାନୀ ନାୟିକାର ଭାବନା ବର୍ଣ୍ଣିତ ହୋଇଥିବାର ଦେଖାଯାଏ । ଅଧିକାଂଶ ଗୀତରେ ନାୟକର ବିରହାନୁଚିନ୍ତା, ସମ୍ଭୋଗଭାବନା, ନାୟିକାର ରୂପପ୍ରଶସ୍ତିମୂଳକ ଚାଟୂକ୍ତିର ଅଭିବ୍ୟକ୍ତି ଦେଖିବାକୁ ମିଳେ । ଏଇ ନାୟିକାକୁ ମୁଖ୍ୟତଃ ପରକୀୟା ଭାବେ ଗ୍ରହଣ କରାଯାଇ ପାରେ । ନାୟକର ସ୍ମୃତି ପଥରେ ଯେଉଁ ନାୟିକାର ଭାବନା ପ୍ରତିଭାତ ହୋଇଛି ସେ କେବଳ ରତିଲାଳସୀ, ସମ୍ଭୋଗଆତୁରା ଓ ବିବିଧ ରତିପ୍ରବୀଣା । ଗୋଟିଏ ଗୀତରେ କେଳିସଦନ ବାହୁଡ଼ା

Digitized by srujanika@gmail.com

ନାୟିକାର ରୂପ ବର୍ଣ୍ଣିତ ହୋଇଅଛୁ । ଉକ୍ତ ବୃତ୍ତରେ ରଚିତ ଗୋଟିଏ ଗୀତରେ ସାଧାରଣ ନାୟକ ପୁରୁଷଙ୍କ ପ୍ରଣୟାନୁଭୂତିମୂଳକ ଉକ୍ତି ତଥା ରାଧାକୃଷ୍ଣଙ୍କ ପ୍ରୀତି ସମ୍ବନ୍ଧୀୟ ଉକ୍ତି ବର୍ଣ୍ଣିତ ।

ମିଳିଥିବା ଗୁଟିଗୋଟି ଜଗନ୍ନାଥ ଓ ବିଷ୍ଣୁ ବନ୍ଦନାମୂଳକ ଗୀତରୁ କବିଙ୍କ ପାରମ୍ପରିକ ଈଶ୍ୱର ବିଶ୍ୱାସର ପରିଚୟ ମିଳିବା ସଙ୍ଗେ ସଙ୍ଗେ କବିଙ୍କ ଆତ୍ମାନୁଭୂତିର କେତେକ ନିଦର୍ଶନ ମଧ୍ୟ ମିଳିଥାଏ । ସମ୍ଭବତଃ କବି ଇଂରେଜମାନଙ୍କ ଦ୍ୱାରା ବାରମ୍ବାର ଅପଦସ୍ଥ ହେବା ଓ ଅପମାନିତ ହେବାରୁ ଏ ଦେଶର ପ୍ରଭୁ ଜଗନ୍ନାଥଙ୍କୁ ନିମ୍ନୋକ୍ତ ରୀତିରେ ଜଣାଣ କରିଥିଲେ—

'କମଳଲୋଚନ ପ୍ରଭୁ ଆଉ ଆଉ ମୋ କର୍ମ ବିଫଳ ହୋଇଲା

× × ×

କମଳାକାନ୍ତଙ୍କୁ ଭରସା କରିଣ
ଲୋକହସା ଏବେ ହୋଇଲା
ଭଣେ ସୋମନାଥ ଅନୁକୂଳ ପତି
ଏ ନିନ୍ଦା କାହାକୁ ହୋଇଲା ହେ' ।୫।

ଇଂରେଜ ଶାସକମାନଙ୍କ ଛମଚାର ଦର୍ପ, ଉତ୍ପୀଡ଼ନ, କୁଶାସନରେ ଜର୍ଜରିତ କବିଙ୍କ ମନରେ ଏତାଦୃଶ ପ୍ରତିକ୍ରିୟା ଜନ୍ମିବା ସମ୍ଭବପର । ସମ୍ଭବତଃ ସେଥିପାଇଁ ରାଜକବି ଗର୍ବୀମାନଙ୍କ ଦର୍ପ ବିଦଳିତ କରିବା ଲାଗି ପ୍ରାର୍ଥନା କରିଛନ୍ତି—

'ଜୟ ଜୟ ଜଗବନ୍ଦନ କେଶବ ଜୟ ହେ ଯାମଳା ଭଞ୍ଜି
ଗର୍ବୀଜନ ଗର୍ବ ତୁରିତେ ଭଞ୍ଜି ।

× × ×

ସମରେ ଅର୍ଜୁନ ଯେସନେ କହି । କୌରବଙ୍କୁ ନାଶିଲ ସାହା ହୋଇ' ।
ଭଗବାନଙ୍କୁ ତେଣୁ ସେ ଜଣାଇଛନ୍ତି—'ଅକଟ ନୋହୁ ଶ୍ରୀ ମୁଖେ
ଆଜ୍ଞା ହେଉ ଯାଉ ଏବେ ମୋର ସଙ୍କଟ ।'
ହାସ୍ୟ ହୋଇଲଣି ବେଳକୁ ବେଳକୁ ଦେଖି ନ ଶୁଣ ମୋର ଦୁଃଖ ।'

ଇଂରେଜ ବିଦ୍ରୋହୀମାନଙ୍କ ବିଷୟ କବି ଜାଣି ନ ଥିଲେ । ମାତ୍ର ସେ ଏହା ଜାଣିଛନ୍ତି ବୋଲି ଇଂରେଜ ଶାସକମାନଙ୍କର ଧାରଣା ଜନ୍ମିଥିଲା ।

Digitized by srujanika@gmail.com

ଏ ବିଷୟ ଜଣାଇବା ଲାଗି ସେମାନେ ସୋମନାଥଙ୍କୁ ବାଧ୍ୟ କରୁଥିଲେ । ସମ୍ଭବତଃ ଏହି ପ୍ରସଙ୍ଗକୁ ଉପଲକ୍ଷ୍ୟ କରି କବି ଲେଖିଥିଲେ—

'ଯେହୁ ଦେଖିଥାଇ, ସେ ସିନା ଜାଣଇ, ଆଉ କେ ଜାଣିବ କହ ତ ?'

ସପ୍ତଶତୀ ଚଣ୍ଡୀର କଥାବସ୍ତୁ ଅବଲମ୍ବନରେ ମାଳଶ୍ରୀ ଗୀତ ଲିଖିତ ଓ ଚଣ୍ଡୀର ବିଷୟକ୍ରମେ ଏଥିରେ ସୁରକ୍ଷିତ । ଏହାର ଭାଷାରେ କବିଙ୍କ ସ୍ୱାଭାବିକ ସରଳତା ମଧ୍ୟ ଅବ୍ୟାହତ ରହିଅଛି । ଓଡ଼ିଆରେ ସମ୍ଭବତଃ ଏହା ହିଁ ସମ୍ପୂର୍ଣ୍ଣ ସପ୍ତଶତୀ ଚଣ୍ଡୀ ଅନୁସରଣରେ ଲିଖିତ ପ୍ରଥମ କାବ୍ୟ । ଏହା ମାଳଶ୍ରୀ ରାଗରେ ଲିଖିତ । ପ୍ରତ୍ୟେକ ଆଖ୍ୟାନର ଘୋଷାପଦ 'ଜୟ ଜୟ' ଶବ୍ଦରୁ ଆରମ୍ଭ ହୋଇଅଛି ଓ ଏଥିରେ ସଂସ୍କୃତ ମାତ୍ରା ବୃତ୍ତ ଛନ୍ଦାନୁସରଣର ପ୍ରୟାସ ଦେଖିବାକୁ ମିଳେ । ଯଥା—

"କୁମ୍ଭଶୋଭନୀ ଆର୍ତ୍ତିନାଶିନୀ ଦୁଷ୍ଟଦୈତ୍ୟ ନିବାରିତେ

ପାଶଶୋଭିନୀ ତ୍ରିପୁରମୋହିନୀ ସର୍ପକୁଣ୍ଡଳ ରାଜିତେ ।"

ଘୋଷା ପଦର ୨ୟ ଚରଣର ଆଦ୍ୟରେ 'ପୁଣି' ଶବ୍ଦ ବ୍ୟବହାର ମଧ୍ୟ ଲକ୍ଷଣୀୟ ।

ଏଥିରେ ଧୂମ୍ରଲୋଚନ, ଚଣ୍ଡମୁଣ୍ଡ, ରକ୍ତବୀଜ, ନିଶୁମ୍ଭ ଶୁମ୍ଭ, ମଧୁକୈଟଭ ବଧ, ମହିଷାସୁର ବଧ ପ୍ରଭୃତି ସଂକ୍ଷେପରେ ବର୍ଣ୍ଣନା କରାଯାଇଅଛି ।

ଭାଷା—

ସୋମନାଥଙ୍କ ଭାଷାରେ ସ୍ଥାନେ ସ୍ଥାନେ ମାର୍ଜିତ ସାଧୁ ଭାଷାର ବ୍ୟବହାର ଦେଖିବାକୁ ମିଳୁଥିଲେ ହେଁ ସରଳ ଲୋକପ୍ରଚଳିତ ଭାଷା ହିଁ ଥିଲା ତାଙ୍କର ଆଦର୍ଶ । କଥ୍ୟ ଭାଷାକୁ ସଙ୍ଗୀତରେ ବିନିଯୋଗ କରିବାରେ ସୋମନାଥଙ୍କ କୃତିତ୍ୱ ସ୍ୱୀକାର୍ଯ୍ୟ । ଅକଟ, କଣ୍ଠ, ଛଦ୍ମ, ଝିମିଟ, ଗୁମାନ, ଟୋପ, ଡୋକାଇ, ଡିଙ୍ଗର, ଉଚ୍ଛୁର, ନିହୁଡ଼ିବା (ଢାଳିବା), ବୋଲଣା, ଛନଛନ, ଡେରଛ, ଲସାଇ, ଫେଡ଼ି, ଛଇଲ, ବଣା, ବାଳୁତ, ଵିସୋର, ଭେଲିକ, ଭଗାରିହସା, ହେଜ, ହୁଡ଼ି ପ୍ରଭୃତି ବହୁ ଦେଶଜ ଶବ୍ଦାବଳୀରେ ଏହାଙ୍କ ଗୀତଗୁଡ଼ିକ ସମୃଦ୍ଧ । ଲୋକଭାଷାର ଛନ୍ଦ ପ୍ରତି କବିଙ୍କ ଅନୁରାଗ ମଧ୍ୟ ତାଙ୍କ ଦ୍ୱାରା ରଚିତ ଗୀତମାନଙ୍କରୁ ଜଣାଯାଏ ।

କେତେକ ଆଞ୍ଚଳିକ ଶବ୍ଦର ପ୍ରୟୋଗ ଓ କେତେକ ଆଞ୍ଚଳିକ ଉଚ୍ଚାରଣଗତ ଭିନ୍ନତା ଯଥା—'ଟି' ପରିବର୍ତ୍ତେ 'ଡ' ( ହୁଡ଼ିଗଲଟି ) ( ହୁଡ଼ି ଗଲଡ ) ପ୍ରଭୃତି ତାହାଙ୍କ ଗୀତମାନଙ୍କରେ ସୁଲଭ । ଧୂର, ଲାଇବା (ଆଣିବା), ଲକସ, ଦୁଛନା



Digitized by srujanika@gmail.com

ପ୍ରଭୃତ କେତୋଟି ଆଞ୍ଚଳିକ ଶବ୍ଦର ଦୃଷ୍ଟାନ୍ତ । କବିଙ୍କ ଗୀତଗୁଡ଼ିକ କପରି ସରଳ ଭାଷାରେ ବିରଚିତ ଦୃଷ୍ଟାନ୍ତ ସ୍ୱରୂପ ନିମ୍ନୋକ୍ତ ଗୀତଟିକୁ ଉଲ୍ଲେଖ କରାଯାଇ ପାରେ—

"କେଣେ ଜଳ ଲଇବା ପୁଣି
ଯମୁନା ତଟେ ମୁରଲୀ ପାଣି । ପଦ ।

ଦେଖି ନଟବର ଲଗାଇବ ହାଟ
ବୋଲିବ କାହିଁକି ଆସ ମିତଣୀ
ହୋଇଗଲେ ମୁକ୍ତ ଛାଡ଼ିଦେବା ବାଟ
ନୋହିଲେ ଘରକୁ ଯାଅ ସଜନୀ । ୧ ।

କେତେ ଆଉ କଥା ଲଗାଇବ ସେହି
ଉତ୍ତର ହୋଇଲେ ବୋଲଣା ଶୁଣି ।
ସୁଧା ନିହୁଡ଼ିଲି ପରି ଲାଗୁଥିବ
ଅଧିକେ ବାନ୍ଧିବ ମଦନ ପୁଣି । ୩ ।"

ଗୋପୀଭାଷା, ମଥୁରାମଙ୍ଗଳ ପ୍ରଭୃତ ପ୍ରାଚୀନ କାବ୍ୟ ଓ ଗୋପାଳକୃଷ୍ଣ, ବନମାଳୀ, ରାମକୃଷ୍ଣ ପ୍ରଭୃତ ପ୍ରାଚୀନ ଗୀତକାରମାନଙ୍କ କବିତା ଦ୍ୱାରା କବି ବିଶେଷଭାବେ ପ୍ରଭାବିତ ହୋଇଥିବା ଜଣାଯାଏ । ନିମ୍ନୋକ୍ତ ଗୀତଟିରେ ଗୋପାଳକୃଷ୍ଣଙ୍କ—'ଶ୍ୟାମଳ ଗାଧୋଇ ମୋ ନୟନ ପଡ଼ିଲାରେ' ଶୀର୍ଷକ ଗୀତର ପ୍ରଭାବ ସୁସ୍ପଷ୍ଟ ।

"ନାଗରମୋହନ ରୂପ ମୋହିଲାରେ
ମୋହିଲାକ୍ଷଣି ଅତନୁ ଦହିଲାରେ ।
ଥର ଥର କରି ଦେଲି ଦେହୀ — ଝରଝର ନେତ୍ରୁ ନୀର ବହି
ମାର ମାରଣ ତ କହି ନୋହିଲାରେ । ଘୋଷା ।

× × ×

ଜଣାଗଲାଣି ଏଥର ବଞ୍ଚି ନୋହେ
ଜାଣ ବୁଡ଼ିବି କିଷ୍ଟସ୍ଥ ତାଙ୍କ ସ୍ନେହେ
ଏଣିକି ନାହିଁ ବିଚାର — ମୋହିଲେ ଶ୍ୟାମସୁନ୍ଦର
ସୋମନାଥ ଦ୍ୱାରବର ଭାଷିଲାରେ । ୫ ।

"ସଜନୀ ବୁଡ଼ିଗଲି ଆଜ ରେ' ଗୀତରେ ବନମାଳୀଙ୍କ ଏହି ଆଦ୍ୟଛନ୍ଦ ବିଶିଷ୍ଟ ଗୀତର ଛାୟା ଲକ୍ଷ୍ୟ କରାଯାଇ ପାରେ । ସେହିପରି "ଧନ ମୋର ରସବତୀ

Digitized by srujanika@gmail.com

ତନୁ ଥର ଥର କରିଦେଲାରେ” ଏବଂ “ତରତର କରାଇ ବନ୍ଧୁ ଅରାଇ ମୋ ତନୁ ରୁନ୍ଧିଗଲାରେ” ଗୀତରେ ପ୍ରାଚୀନ କବି ରାମକୃଷ୍ଣଙ୍କ ସଙ୍ଗୀତର ରାଗଶୈଳୀର ଅନୁକୃତ ସୁସ୍ପଷ୍ଟ । ଓଡ଼ିଆ ଚୌପଦୀର ଏକ ବୈଶିଷ୍ଟ୍ୟ ପଲ୍ଲୀଗୀତ ରଚନାରେ ମଧ୍ୟ କବିଙ୍କ ଅନୁରାଗ ଲକ୍ଷ୍ୟ କରାଯାଇ ପାରେ । ଯଥା—

“ଗୃହିଁ। ପ୍ରାଣ ଈଶ୍ୱରୀ ରେ
କୁରଙ୍ଗୀ ନୟନା ଦେଖି ଗଲି ମୁଁ ସରି ରେ ।
ସୁନ୍ଦରି ସୁନ୍ଦର ଶର ଆୟୁଧ ନେଲା ମୋର
ମରମ ଦହୁଅଛି ଜାଣ ବନ୍ଧୁ ଏଥର । ଘୋଷା ।

ନାଗରୀବର ଚତୁରୀ, ରମଣୀଧନ ହୃଦ ହେଲଣି କରୁଣୀ
ପୀରତି କର ରସେ କୀରତି ରହୁ ଦେଶେ
ଧୀର ଗମନା ପାଶେ ଥିବି ବସି ଲାଳସେ
କରି ବଡ଼ କୋହ ତର୍ଜିଲା ଏଥର
ଧରି ପ୍ରାଣ ନେବ ଜଣାଏ ନିକର
ଚନ୍ଦ୍ରବଦନା ମୋ ଘେନ ଘେନ ଭାଷା
ଆଶା ନ ଭାଙ୍ଗ ରୁ ଆରେ ନାଗରୀ ଭୂଷା । ୧ ।

× × ×

ବୀର ଶ୍ରୀ ସୋମନାଥ ନୃପତି ଭାଷିଲେ
ମୋହନ ମନ ତାପ ଶ୍ରୀମନ୍ତୀ ନାଶିଲେ । ୪ ।



**ଆଳଂକାରିକତା—**

କବିଙ୍କ କାବ୍ୟସୃଷ୍ଟି ଆଳଂକାରିକ ଆଦର୍ଶ ଓ ରୀତିକାଳୀନ ପରମ୍ପରା ଉପରେ ପ୍ରତିଷ୍ଠିତ କହିଲେ ଅତ୍ୟୁକ୍ତି ହେବ ନାହିଁ । ଅନୁପ୍ରାସ, ଯମକ ପ୍ରଭୃତି ଶବ୍ଦାଳଂକାର ପ୍ରୟୋଗରେ କବିଙ୍କର ଥିଲା ସର୍ବାଧିକ ଅନୁରାଗ । ଅକ୍ଷର ନିୟମରେ କବିତା ରଚନା ସେ ଯୁଗରେ ବେଶ୍ ଜନପ୍ରିୟତା ଲାଭ କରିଥିବା ଅନୁମେୟ । ଏଣୁ କବି ‘ର’ ନିୟମ ‘ବ’ ନିୟମ ନିୟମରେ କବିତା ଲେଖିବା ସଙ୍ଗେ ସଙ୍ଗେ ଆଦ୍ୟରେ ‘କ’ ଠାରୁ ‘ଚ’ କ୍ରମ ଏବଂ ‘ଛ’ ଠାରୁ ‘ଠ’ କ୍ରମ ରକ୍ଷାକରି ଗୀତ ରଚନା କରି ଅଛନ୍ତି । ‘ତ’

Digitized by srujanika@gmail.com

ପ୍ରାନ୍ତ ନୟୂମରେ କବିଙ୍କ "ନ ଜାଣି ମୁହିଁ ହୁଡ଼ ଗଲାତ" ଗୀତଟି ରଚିତ । ଅନୁପ୍ରାସ ରଚନାରେ କବି କିପରି ସମଧିକ ଅନୁରାଗୀ ଥିଲେ, ତାହା ନିମ୍ନୋକ୍ତ ଗୀତଟିରୁ ଅନୁମେୟ ।

'ବରଜ ବରଜ ଆସୁ ବାର ତାକୁ ଯା'ରେ । ଘୋଷା ।
ବଡ଼ ପରମାଦ ଶ୍ୟାମ ଦେଖି ତରଜାରେ
ବଲଇ କଟୂବଚନ ଆସୁ ତାକୁ ଯାରେ । ୧ ।

ବୋଲେ ସୋମନାଥ ଖାରବର ସେ ଯାରେ
ବିସ୍ମର ନ କର ରାଧେ ସେ ନାମ ମଜାରେ । ୫ ।'

ଶୃଙ୍ଖଳା ଅଳଂକାରରେ ରଚିତ ନିମ୍ନୋକ୍ତ ଗୀତଟିରୁ ତାଙ୍କର ଅଳଂକାର—ଯୋଜନାର କୃତିତ୍ୱ ମଧ୍ୟ ଜଣାପଡ଼େ ।

'ନଇଲେ ମୋର ପୁରକୁ ଗୋ ଶ୍ୟାମସୁନ୍ଦର
ଦର ମୁଁ କରନ୍ତି ଦୂର
ଦୂର ହୋଇଯାନ୍ତା ମାର, ମାରନ୍ତା କାହିଁକି ଶର,
ସରସ ଅଙ୍ଗେ ମୋହର । ପଦ ।

| | |
|---|---|
| ମଣ୍ଡିଣ ବାସରେ ବାସ | ବାସ କୁସୁମେ ହରଷ |
| ରସରେ ବଳାଇ ଆଶ | ଆଶା ଭାଙ୍ଗିଣ ନିରାଶ |

ରାସବିହାରୀ କଲେ ତ ଊଣା, ଊଣା ହୋଇବ ବୋଲିତ ନ ଥିଲି ମୋର ଜଣା
ଜଣା ନ ଥିଲି ଖଣ୍ଡପଣ ତାଙ୍କର ଯେ ଶୁଣା, ଶୁଣାଥିଲେ ନ ବଳାନ୍ତି ମୋ ଚିତ୍ତ ନବୀନା
ବିନା ଦୋଷେ ମୋର ଅଙ୍ଗ କାମଶରେ ହେଲା ଭଙ୍ଗ ।୧।

× × ×

"ବରଜରାଜ ବିଜୟେ କରିବେ ଆଜ । ଭଣେ ସୋମନାଥ ରାଜ ।୪।"

'ଅ' ଠାରୁ 'କ୍ଷ' ପର୍ଯ୍ୟନ୍ତ ସମସ୍ତ ସ୍ୱର ଓ ବ୍ୟଞ୍ଜନର କ୍ରମରକ୍ଷା ପୂର୍ବକ ଯେଉଁ ପଦ୍ୟରଚନା ପ୍ରସ୍ତୁତ ହୁଏ ତାହାକୁ ସଂସ୍କୃତ ପରିଭାଷାରେ ବର୍ଣ୍ଣମାତୃକା ପ୍ରବନ୍ଧ କୁହାଯାଏ । ଏତାଦୃଶ ରଚନା ପ୍ରଣୟନରେ ମଧ୍ୟ ସୋମନାଥଙ୍କ ଅନୁରାଗ ଲକ୍ଷ୍ୟ କରାଯାଇପାରେ । ଗୋପୀଚନ୍ଦ୍ରା' ଗୀତିକାଟି ତାହାର ଅନ୍ୟତମ ଦୃଷ୍ଟାନ୍ତ ।

ସୋମନାଥଙ୍କ ଏହି ଗୀତଗୁଚ୍ଛକରୁ ତାହାଙ୍କ ବ୍ୟକ୍ତିତ୍ୱର ନିର୍ଦ୍ଦିଷ୍ଟ ରୂପରେଖ ସମ୍ପର୍କରେ ଆମ୍ଭେମାନେ ସବିଶେଷ ଅବଗତ ହୋଇ ପାରୁନା ।

Digitized by srujanika@gmail.com

ସେ ଯେପରି ଦେଶଭକ୍ତ ଥିଲେ, ସେହିପରି ରାଧାକୃଷ୍ଣ ଓ ଜଗନ୍ନାଥଙ୍କ ଉଦ୍ଦେଶ୍ୟରେ ମଧ୍ୟ ଭକ୍ତିଗୀତିକା ରଚନା କରିଛନ୍ତି । ଗୀତଗୁଡ଼ିକରେ ଉଚ୍ଚକଳ୍ପିର ନିଦର୍ଶନ ଖୁବ୍ କମ୍ । ସମ୍ଭବତଃ କବିତାଗୁଡ଼ିକ ତାହାଙ୍କର ପ୍ରାଥମିକ ରଚନା । ଅନ୍ତରୀଣ ବନ୍ଦୀ ଭାବେ କାଳଯାପନ କରୁଥିବାବେଳେ ସେ ଆଉ କଣ ରଚନା କରିଥିଲେ ତାହା ଜାଣିବା ସମ୍ଭବ ନୁହେଁ । ଯାହାହେଉ ଚୌପଦୀ ଓ ଭକ୍ତି କବିତା ପୂର୍ବରୁ ସେ ମାଳଶ୍ରୀ ରଚନା କରିଥିବା ସମ୍ଭବପର ।

ଅନ୍ୟାନ୍ୟ ରାଧାକୃଷ୍ଣ ଲୀଳାତ୍ମକ ଗୀତଗୁଡ଼ିକ ଗତାନୁଗତିକ କହିଲେ ଅତ୍ୟୁକ୍ତି ହେବ ନାହିଁ । ସୋମନାଥଙ୍କ ସାହିତ୍ୟରଚନା କାଳ ବାସ୍ତବିକ ଥିଲା ଏକ ଅନୁକରଣର ଯୁଗ । ମଧ୍ୟଯୁଗୀୟ ସୁପରିଚିତ କୃଷ୍ଣଲୀଳାତ୍ମକ ଗୀତ ଓ ଆଦି-ରସାତ୍ମକ ଚୌପଦୀ ରଚନା କବିମାନଙ୍କର ଏକମାତ୍ର ଧର୍ମ ଓ କର୍ମ ହୋଇପଡ଼ିଥିଲା । ସୋମନାଥ ସେହିଭାବରେ ପରିଚାଳିତ ହୋଇ ଏହି ଗୀତିକା ଗୁଡ଼ିକ ରଚନା କରିଯାଇଅଛନ୍ତି ।

ଯାହାହେଉ, ସେ ଯୁଗରେ ଏହି ରାଜକବିଙ୍କ କବି ପ୍ରତିଭା ବିକଶିତ ନ ହେଉଣୁ ଅକାଳରେ ଝାଉଁଳି ପଡ଼ିଲା । ବନ୍ଦୀ ଅବସ୍ଥାରେ ସେ ହୁଏତ କେତେକ ରଚନା ଲେଖିଥିବେ । ମାତ୍ର ସେଗୁଡ଼ିକ ସମ୍ଭବତଃ ତାହାଙ୍କ ମୃତ୍ୟୁପରେ ଆବର୍ଜନା ଭାବେ ଚିରକାଳ ପାଇଁ ବିଲୁପ୍ତ ହୋଇ ଯାଇଛି । କାଳର ସର୍ବଗ୍ରାସୀ ପ୍ରଭାବରୁ ଯେତିକିମାତ୍ର ଆମର ହସ୍ତଗତ ହୋଇଛି ତାହି ହିଁ ଆଜି ଉଦ୍ଧାର କରିବା ସଙ୍ଗେ ସଙ୍ଗେ ଆମେ ଏହି ରାଜକବିଙ୍କ ଉଦ୍ଦେଶ୍ୟରେ ଶ୍ରଦ୍ଧାଞ୍ଜଳି ନିବେଦନ କରୁଛୁ ।

ଜାନକୀବଲ୍ଲଭ ମହାନ୍ତି



Digitized by srujanika@gmail.com

(କ) ଚଉତିଶା

## ସୁନ୍ଦରୀ ଚଉତିଶା

(ରାଗ-ବସନ୍ତ)

କୋମଳାଙ୍ଗୀ କର ଧରି ବସି ହସି କହୁଛନ୍ତି ନଟନାଗର
କମଳମୁଖୀ ରେ ମୁଁ ତୋର ଅଧୀନ ନ ଧରିବୁ ମନେ ଅନ୍ତର
ସୁନ୍ଦରୀ, କି କହିବା ଆଉ ଅଧିକ,
କମଳ ଯେସନ ବିକଶିତ ହୋଏ ଦେଖିକରି (୧) ଛାୟାନାୟକ । ୧ ।

ଖଞ୍ଜନନେତ୍ରୀ ଅନ୍ତର ନ କରିବୁ ମୋର ଜଣାଣ ଅନୁକ୍ଷଣି
ଖିନ୍ନଉଦରୀ ରେ ମୁଖେ ଦେଲେ ବଂଶୀ, ଡାକଇ ରାଧା ରାଧା ପୁଣି
ସୁନ୍ଦରୀ, ଖଟି ମୁଁ ଅଛୁ ଅନୁବ୍ରତେ,
ଖିତିମଣ୍ଡନା ରେ କ୍ଷଣେ ହେଁ ବିମନ ନ କରିବୁଟି ଆଉ ମୋତେ । ୨ ।

ଗଜଗତି ରଙ୍ଗେ ରହାଉଥାଉ ରେ ଧରି (୨) କରିଦନ୍ତ ପଲଙ୍କେ
ଗୁଣମଣି ଗୁଣ ଭାଳୁ ନିଶିଦିନ ନ ସରେ ଯାହା ଗୃହୁଁ ବାଙ୍କେ,
ସୁନ୍ଦରୀ, ଗୁମାନେ ନ କହୁ ତୁ କଥା,
ଗତ କଥାମାନ ଦୂର କରିଦେଇ କିପାଇଁ ପୋତିଦେଉ ମଥା । ୩ ।

ଘନଜଘନା ରେ ଘଡ଼ିଏ ପାଶରେ ଅନ୍ତର ହେଲେ ଯୁଗ ପରି
ଘୋଷୁଥାଏ ବସି ପ୍ରୀତି ଅନୁକ୍ଷଣେ ପ୍ରୀତିବତ୍ସଳା ସହଚରୀ,
ସୁନ୍ଦରୀ, ଘର କଲେ କୁଞ୍ଜବନରେ,
ଘାରୁଥାଏ ବସି (୩) କୁରରୀ ପରାୟେ କେଳିକଦମ୍ବର ମୂଳରେ । ୪ ।

---

(୧) ଛାୟାନାୟକ—ସୂର୍ଯ୍ୟ, (୨)କରୀ—ହସ୍ତୀ, (୩) କୁରରୀ—କପୋତ ଜାତୀୟ ପକ୍ଷୀ ।

Digitized by srujanika@gmail.com

ଊଚଊରଜା ରେ ଅନୁରାଗ ପାଇଁ ହୋଉଥାଏ ମୁଁ ଉଷତ
ଊରଜେ ଲଗାଇ ମୁଖେ ଚୁମ୍ବ ଦେଇ ପୂରାଉଥାଉ ମନୋରଥ
ସୁନ୍ଦରୀ, ଉଚ୍ଛନ୍ନ ନ କର ଏଥର,
ଊଜାଗରେ ବସିଥାଉ ମଦାଳସୀ ଯେହ୍ନ ମଦନ ପ୍ରୀତିକର । ୫ ।

ଚମ୍ପାବରନା ରେ ବରଜମଣ୍ଡନା ଚତୁରୀମାନଙ୍କ ସିଂହାଣୀ
ଚମକାଇ ଅଙ୍ଗ ରଙ୍ଗେ ଭିଡ଼ୁଥାଉ ପାସୋର ଦେଲୁ ଏହା ପୁଣି,
ସୁନ୍ଦରୀ, ଚଞ୍ଚଳ ହୋଇ ଅଚଞ୍ଚଳ,
ଚଞ୍ଚଳ ଇକ୍ଷଣୀ ଗ୍ଭରୁ ସୁଲକ୍ଷଣୀ ନ ଢାଅ ମୁଖରେ ଅଞ୍ଚଳ । ୬ ।

ଛଇଲମଣି ଯୁବତୀ-ଶିରୋମଣି ରମଣୀରତନ ସୁଶୀଳା,
(୪) ଛଦ୍ମ ନ ଧର ଚନ୍ଦ୍ରବଦନା ମୋ କଣ୍ଠର ମରକତମାଳା,
ସୁନ୍ଦରୀ, (୫) ଛଡ଼ରସେ ଯାକୁ ଭୁଂଜାଇ
ଛଳ କରିବାର କାହିଁ ଅଛି ଶୁଣ ବାଳୁର ଚଦ୍ଦେ ପ୍ରାଣସହି । ୭ ।

ଜବାଅଧରୀ ରେ ଜଗତ ଜାଣନ୍ତି ଏହୁପରି ତ ଦେନ ତନୁ
ଜାଣି ଦୁଷ୍କର ଘରେ ତୁ ଉତପତି ମୁଁ ହେଲି ଯଶୋଦାଙ୍କ (୬) ସୂନୁ
ସୁନ୍ଦରୀ, ଜଡ଼ ପରି କର୍ଣ୍ଣ ନ କର,
ଜୀବନ ଥିଲେ କି ଗ୍ଭଡ଼ି ରହିବ ରେ ରମଣୀରତନ ମୋହର । ୮ ।

ଝଡ଼ାଇ ନ ଦିଅ ଅଙ୍ଗକୁ ମୋହର (୭) ଝଷକେତନର ହସ୍ତରେ
(୮) ଝିମିଟେ ଯାକୁ ନ ଗ୍ଭଡ଼ୁଥାଉ ପାଶୁ ଭସାଇ ଦେଉ ସରତରେ,
ସୁନ୍ଦରୀ, ଝଗଡ଼ା ନ କର ମୋଠାରେ,
(୯) ଝାଡ଼େ ଯେହ୍ନ ବୁଲୁଥାଉ ପ୍ରାଣବନ୍ଧୁ ମୋତେ ଯେଜଣ ସଙ୍ଗତରେ । ୯ ।

ନମ୍ରମ କରୁଛୁ କୁଳଦୀପ ଛୁଇଁ ପ୍ରଥମ ରତିରଙ୍ଗ କାଳେ
ଲାବଣ୍ୟନିଧି ରେ ବାଧ କରଅଛୁ ତୁ ତ ନ ଗୃହୁଁ ଅଛୁ ଛଳେ,
ସୁନ୍ଦରୀ, ନଟବରେ ରାଧା ପରିତି,
ଲଗିଗଲାନ ଆଉଟିଣ ଥିବା ସୁବର୍ଣ୍ଣ ସିନା ଫୁଙ୍କା ମତି । ୧୦ ।

---

(୪) ଛଦ୍ମ—ଛନ୍ଦ, କପଟ, (୫)ଛଡ଼ରସ—ଷଡ଼ରସ, (୬) ସୂନୁ—ପୁଅ,
(୭) ଝଷକେତନ—କନ୍ଦର୍ପ, (୮) ଝିମିଟେ—ମୁହୂର୍ତ୍ତେ, (୯) ଝାଡ଼—ଅରଣ୍ୟ ।

Digitized by srujanika@gmail.com

ଟଳି ଯାଉଅଛୁ ଅମିୟବଚନ ବହୁତ ଧନ ହୋଇ ନାହିଁ
(୧୦) ଟାହି କରିବେ ଲୋକେ ଏବେ ଶୁଣିଲେ ବସ୍ତୁର ଶରେ ଶଶୀମୁହାଁ
ସୁନ୍ଦରୀ, ଟେକ ମୋତେ (୧୧) ଟୋପେ ପକାଇ
(୧୨) ଟିକା କରି ମଣି ଶିରେ ବହିଥିଲେ ତାକୁ କି ଭଗ୍ନ କରିଦେଇ । ୧୧ ।

ଠାକୁରଙ୍କ ବାଣୀ ଶୁଣି ଠାକୁରାଣୀ ଆନନ୍ଦେ ହୋଇ ଜରଜର
ଠକପଣ କରି କେତେ କହୁଅଛ କମଳ ମୁଖରେ ତୁମ୍ଭର
ନାଗର, ଠଣ ସୁନ୍ଦର, ଗୋପୀନାଥ,
ଠିକ କରି ଏହା ଗୀତରେ ଭଣିଲେ (୧୩) ନୃପଢବର ସୋମନାଥ । ୧୨ ।

ଡକାଇ ବଂଶୀରେ ଆମ୍ଭ ପଞ୍ଚ ମନ ତୁମ୍ଭ ଚରଣେ (୧୪) ଠକାଇଲ
ଡରାଇଲେ ଶାଶୁ ନଣନ୍ଦ ଆମ୍ଭଙ୍କୁ ନ ଧାଙ୍ଗିଲେ ଯେ ତୋର ବୋଲ
ନାଗର, ଡେରିଥାଉ କର୍ଣ୍ଣ ପଥକୁ,
(୧୫) ଡିଙ୍ଗର ପୁରୁଷ ଭ୍ରମର ମତରେ କହୁଅଛ କେତେ ଆମ୍ଭଙ୍କୁ । ୧୩ ।

ତମାଳ ପରି ଲଗୁଛ ତୁମ୍ଭ କଥା କହିଲେ ଯେତେ ପୁର ସର
ତାଳିଲ ବୃନ୍ଦାବନର କେତେ ସୁଖ କରିଥିଲେ ମନହିଆଳ
ନାଗର, ତମ କହୁଥାନ୍ତି ପୁରୁଷ,
ତୋ କାନ୍ତ ଅମୃତ ପ୍ରାନ୍ତେ ହୋଏ ଶରୁ ମିଳିଲେ କାଳକୂଟ ବିଷ । ୧୪ ।

ଆୟତ୍ତ ନ ରହେ ଭୁଲିଯାଏ ଶରୁ ଶୁଣିଲେ ମଧୁର ବଚନ
ଅରକ୍ଷ ହୁଅଇ ପଛକୁ ଖାଳିଲେ ନ ସରୁଥାଏ ନଣିଧନ
ନାଗର, ଅହି ଦଂଶିଲି ପ୍ରାୟ ହୋଇ
ଆରାଧି ଆରାଧି କାହିଁରେ ନୁହଇ ଫିଟିଲେ ଶୁକ ପରି ହୋଇ । ୧୫ ।

ତାମସରେ ପ୍ରୀତି କରିଥାଅ ସିନା ଚହ୍ଲା ନ ଯାଏ କି ସେ କଥା
ତରଳ ହୋଇ ପ୍ରଥମେ ମଞ୍ଜୁ ବାଣୀ ପୁଣି ପ୍ରାନ୍ତେ ଚନ୍ଦ୍ର ବିଧାତା,
ନାଗର, ତୁମ୍ଭେ ଜଗତର ମୋହନ,
ତଥାପି ଅବଳା ବଳିଯାଉ ଥାଉ ନ କର କିପାଁ ସନମାନ । ୧୬ ।

---

(୧୦) ଟାହି—ଅଛା, (୧୧) ଟୋପେ—ଖାତ । (୧୨) ଟିକା—ତିଳକ, (୧୩) ନୃପଢବର—ରାଜାଶ୍ରେଷ୍ଠ, (୧୪) ଠକାଇଲ—ରଖାଇଲ, (୧୫) ଡିଙ୍ଗର—ଶଠ ।

Digitized by srujanika@gmail.com

(୧୬) ଥିଏ ନୋହେ ଚିତ୍ତ ରମ୍ଭାପତ୍ର ମତ କମ୍ପଇ ଦେଖ ମୋହିବାରେ
(୧୭) ଥାବର ଜଙ୍ଗମ ବିମ୍ବ ହୋଇଯାନ୍ତି ତୁମ୍ଭ ବଷ୍ଟୁକୂଟ ମାଧ୍ୟାରେ
ମୋହନ, ଥିଏ କାହ୍ନୁଁ ହେବୁ ଯୁବତୀ,
ଥିତ ନୋହୁ ସିନା ବୋଲି କହୁଅଛ କରିଥାଅ ଯେତେ ପୀରତି । ୧୭ ।

ଦୟାଳୁ ସକାଶୁଁ ଦୟାନିଧି ନାମ ବୋଲି କରି ଆମ୍ଭେ ଜାଣିଚୁ
ଦରିଦ୍ର ନିଧି ଅବଧି କରିଦିଅ ଏହା କାହିଁ କର୍ଣ୍ଣେ ଶୁଣିଚୁ,
ନାଗର, (୧୮) ଦରେ ହୋଇ ସିନା କାତର,
ଦହୁଥାଉ ଅଙ୍ଗ କର ନାନା ରଙ୍ଗ ବାଗୁର ନ କର ଚିତ୍ତର । ୧୮ ।

ଧରିଥାଉ ଶିରେ ବଚନ ତୁମ୍ଭର ଅନ୍ତର ନ କରୁ ଚିତ୍ତରେ
ଧୂରି କରିଦିଅ ନବନାଗର ହେ ଘୋଷୁଥାଉ ତୁମ୍ଭ ନାମରେ
ନାଗର, ଧରମ ତୁମ୍ଭଠାରେ ନାହିଁ,
ଧୀରେ ବୋଧି ମନ ଅଧୀର କର ଂଯେ ଆମ୍ଭ ନାମରେ ବଂଶୀ ବାଇ । ୧୯ ।

ନବଘନକୁ ଚାତକ ଆଶାକରି ଜଳ ଯେମନ୍ତେ ନ ପାଇଲା
ନବୀନ ସୁନ୍ଦର ଆଶ୍ରେ କଲୁଠାରେ ଦୁଃଖ ସେହିପରି ହୋଇଲା
ନାଗର, ନ ଇଚ୍ଛି ଥାନ୍ତୁ ଯେବେ ଆମ୍ଭେ
ନୋହିଲେ ଆମ୍ଭଙ୍କୁ ଏମନ୍ତ ପରି କି କରି ଯେ,ଥାନ୍ତ ଏବେ ତୁମ୍ଭେ । ୨୦ ।

ପରମାଦରେ ପଶିଲୁ ଅପବାଦ କରି ନେଇଥାଉ ପଛକୁ
ପର ପୀରତି ଜାଣିଥିଲେ ଏମନ୍ତ ନ ରୁଚନ୍ତା ଆମ୍ଭ ଚିତ୍ତକୁ
ନାଗର, ପାର ନ ଗଲି ଗୁରୁବାଣୀ
ପୁରନ୍ଦର ପରି ପ୍ରଭୁ ସେବା କରି ଏବେ ହୋଇଛୁ ଦୋଷିରୁଣୀ । ୨୧ ।

ଫଣୀଧର ରିପୁ ଏହା କରିଅଛ କହିଲେ ତୁମ୍ଭଙ୍କୁ କି ହେବ
ଫାନ୍ଦେ ପକାଇଲେ ଏମନ୍ତ କରିବ ବାଗୁରଣ ଥିଲା ଦଇବ,
ନାଗର, ଫନ୍ଦା କରିଥିଲୁ ତୁମ୍ଭଙ୍କୁ,
ଫାଡ଼ି ହେଲନି ଅଞ୍ଚଳ ପରି ଏବେ କହୁଛ ମନ ପାଇବାକୁ । ୨୨ ।

---

(୧୬) ଥିଏ—ସ୍ଥିର, (୧୭) ଥାବର—ସ୍ଥାବର, (୧୮) ଦର—ଶଙ୍ଖ, ଭୟ ।

Digitized by srujanika@gmail.com

ବସି ଖେଳୁଥାଉ ପୂର୍ବ କଥାମାନ ତୁମ୍ଭର ଏମନ୍ତ ସ୍ୱଭାବ
ବଳୀକ ଦାନ ମାଗିଲ ସତ୍ୟ ଛଳେ ଦେଇ ପାଇଲା ପରାଭବ
ନାଗର, ବରଜ କିଶୋର ବୋଲାଇ,
ବାଣୀବଲ୍ଲଭ ଜଗତରେ ବୋଲନ୍ତି ମିଛେ ଦେଉଥାଅ ଭୁଲାଇ । ୨୩ ।

ଭୂପତନନ୍ଦନୀ କଣ୍ଟୁଭାଷା ଶୁଣି ରଙ୍ଗଅଧରେ ମନ୍ଦହାସ
ଭାଳ ନାହିଁ ସଖି ପ୍ରୀତି କୁନ୍ଦନାରେ ଶୁଣି ଚଉ ହୁଏ ବିରସ
ସୁନ୍ଦରୀ, ଭାବନା ମୋର ତୋର ନାମ,
(୧୯) ଭଣେ ସୋମନାଥ ସିଂହ ବୀରବର ଶ୍ରୀକୃଷ୍ଣ ପାଦେ କରି ଧ୍ୟାନ । ୨୪ ।

ମହୀମଣ୍ଡନା ମହୀକ ଗୃହିଁନାରେ ଚନ୍ଦ୍ର-କୁମୁଦ କି ଅନ୍ତର
ମହାଦେବ କି ପାର୍ବତୀ ଭିନ୍ନାଭିନ୍ନ ତୋହ ମୋହ ସେହି ପ୍ରକାର
ସୁନ୍ଦରୀ, ମଧ୍ୟସ୍ୱର୍ଗରେ ଏହିମତ,
ମହୀରେ ପାତକୀମାନେ ତରିଯିବେ ଧରିଲାକ୍ଷଣି ନାମ-ପଥ । ୨୫ ।

ଜୀବନେ ଯିବ ନାହିଁ ପାସୋର ସଖି ଏମନ୍ତ ହୋଇଛୁ ଘଟଣ,
ଯହିଁ ତହିଁ ଥିଲେ ଭିନ୍ନ ନୋହିବ ରେ ପୀନବସନା ସ୍ନେହମାନ,
ସୁନ୍ଦରୀ, ଜବାଧରୀ ଆନ ନ ଧର,
ଯାବତ ଚନ୍ଦ୍ରରେ ଭିନ୍ନ କେ କରିବ ତୁ କିମ୍ପା ଧରୁଛୁ ଅନ୍ତର । ୨୬ ।

ରହିଲୁନ ଏହିପରି ଯୁଗେ ଯୁଗେ ଭିନ୍ନ କଲେ କିଏ ଲୁଚିବ,
ରାଧାପ୍ରୀତି ସିଦ୍ଧ କରିଅଛୁ ବିଧି ଏହା କେ ଅନ୍ୟଥା କରିବ,
ସୁନ୍ଦରୀ, ରବିତଳରେ ଏହି କଥା,
ରହିଗଲାନ ରେ କରୀନ୍ଦ୍ରଗମନା ଟେକି ନ ଗୃହଁ କପାଁ ମଥା । ୨୭ ।

ଲଭେ ମାନ ଜାଣି କେ କରିବ ଆନ ଯେ ଅଛନ୍ତି ମହୀତଳରେ,
ଲାବଣ୍ୟନିଧି ରେ ନ ଧର ବିମନ ଏ କି ଉଚିତ ତୋରଠାରେ,
ସୁନ୍ଦରୀ, ନଗରେ ନ ଜାଣନ୍ତୁ ପୁଣି,
ଲଭିଲା ପୀରତି ଅନ୍ତର ହେଲେଟି ହସିବେ ଜାଣ (୨୦) ସପତଣୀ । ୨୮ ।

---

(୧୯) ଭଣେ—କହେ, (୨୦) ସପତଣୀ—ସଉତୁଣୀ ।

Digitized by srujanika@gmail.com

ବସି ଭାଳୁଥିଲେ ଯେତେ ଗୁଣମାନ କହିଲେ କେବେ ନ ସରିବ ,
ବ୍ରଜସୁନ୍ଦରୀ ଅବିବେକୀ ହୋଇଲେ ଏ ଦୋଷ କାହାକୁ ହୋଇବ,
ସୁନ୍ଦରୀ, ବିରହୀ ନ କର ଆମ୍ଭଙ୍କୁ,
ବାରଣ କଲେ କି ନୋହିବଟି କହୁ କହୁଅଛୁ ମୁହିଁ ତୁମ୍ଭଙ୍କୁ । ୨୯ ।

ଶିରଫଳ ଗର୍ଭ ଅଟେ ମୁଁ ତୋହର କପାଇ ହୋଇଛୁ ବିମୁଖ,
ସହି ନ ପାରିବୁ ଏବେ ରେ ନାଗରୀ ମୁଁ ହେବି କାହାର ତୁ ଲେଖ,
ସୁନ୍ଦରୀ, (୨୧) ସାରସଗତି ମୋ ଜୀବନ,
ଶଶକୁ ଯେସନେ ଚନ୍ଦ୍ର ବହିଛନ୍ତି ସେପରି ମୁହିଁ ତୋର ଜାଣ । ୩୦ ।

ସରିତରେ ଭାସିଗଲେ ମୀନନେତ୍ରି, ଭଲ କି ହୋଇବ ଏ କଥା,
ଶ୍ରୀରମୋହିନୀ ରେ ଉଣା ବୁଦ୍ଧି ଏତେ; ଶୁଣି ମୁଁ ପାଉଅଛୁ ବ୍ୟଥା
ସୁନ୍ଦରୀ, ସୁରତି ଅଟେ ପରମାଦ,
ସର ସର କରି ବନ୍ଧଦେଲେ ବନ୍ଧୁ ବନ୍ଧିବୁ ନୋହିବ ଆପଦ । ୩୧ ।

ସଦ୍‌ଭାବ କରି ରଖିଯାଇ ଯାହାକୁ ତାକୁ କି କରି ପରମାଦ,
ସୁରଙ୍ଗାଧରୀ ଧନମାନ ବିଗ୍ରହ ଚଢେ କେତେ ଧରି ବିଷାଦ,
ସୁନ୍ଦରୀ, ସାହସ ନ ଦଅ ଉଡ଼ାଇ,
ସରିଯିବ ଯଦି ଯୋଗୀ ମୋହନ୍‌ରେ ନ ରହିବ ତୋର ବଢ଼ାଇ । ୩୨ ।

ହଟ ନ କର ମୁଁ ଅଟଇ କାହାଁର ସବୁଦିନେ ଏହି ଭରସା,
ହରଗଉରୀ ସେବା କରି ପାଇଛୁ ଏବେ କାହିଁତେ ମତେ ରସା,
ସୁନ୍ଦରୀ, ହରଷରେ ନୁହିଁ ବିରସ,
ହର ପରି ପ୍ରଭୁ ରହି ନ ପାରିଲେ ତେଣୁ ବୋଲନ୍ତି (୨୨) ଦିଗବାସ । ୩୩ ।

କ୍ଷଣେ କୃଷ୍ଣବାଣୀ ଶୁଣିଣ ରମଣୀ ଅନେକ ଆନନ୍ଦ ହୋଇଲେ,
କ୍ଷୀରପାନ ପାଇ କରି ଯେହ୍ନେ ବତ୍ସା ତେମନ୍ତ ହୋଇଣ ରସିଲେ,
ସୁଜନେ, କ୍ଷମା ମାଗଇ ଗୋପୀନାଥ
(୨୩) କ୍ଷିତିପତି ସୋମନାଥ ନୃପ କହେ ମନାଇ ନେଲେ ବନ୍ଧୁ ଚିତ୍ତ । ୩୪ ।



---

(୨୧) ସାରସଗତି—ହଂସଗତି, (୨୨) ଦିଗବାସ—ଶିବ, (୨୩) କ୍ଷିତିପତି—ରାଜା ।

Digitized by srujanika@gmail.com

## ଶ୍ରୀରାଧାଙ୍କ କୃଷ୍ଣରୂପ ଭାବନା

ଆରେ ଆରେ ମୋର ନବୀନ ଗୋରୀ ଗୃହିଁ ଗୃହିଁ ଯାଇ ରେ । ପଦ ।

ନେଲଣି ମୋହର ଜାତ ମହତ     ଆଉ କାହିଁ ଅଛୁ ଏ ମୋର ସତ
ନଟବର ରୂପକୁ ଅନାଇ ରେ । ୧ ।

ହୋଇଥାଏ ସେହ୍ନ ଦଦ୍ୟ କାଛେଣି     କର ଧରିଥାଏ ମୁରଲୀପାଣି
ଶିରଗନ୍ଧ ପିଠିକି ଲୋଟଇ ରେ । ୨ ।

କଟୀର କଙ୍କିଣି ବଜାଇ ଟାଣ     ପୟରେ ନୂପୁର ସେ ରୁଣ ଝୁଣ
ଶୁଣି ଗୁଡ ଚମକ ପଡ଼ଇ ରେ । ୩ ।

ଜାଣଇ ସେହ୍ନ ଯୁବତୀ କ ମୋହ     ତା' ପରି ଆଉ ଜଗତରେ ନାହିଁ
ବିମ୍ବାଧରେ ହସ ହସ ହୋଇ ରେ । ୪ ।

ଭଣେ ସୋମନାଥ ରାଜା ଏ ରସ     ମୋହନେ ରାଧିକା ହୃଅନ୍ତି ତୋଷ
ଚନ୍ଦ୍ରମୁଖ ତଳକୁ * ଲୁଆଇଁ ରେ । ୫ ।



## ଶ୍ରୀରାଧାଙ୍କ ପ୍ରତି କୃଷ୍ଣ

ରଙ୍ଗିନ ରେ, ତୁ ମୋ ପ୍ରାଣ ପୀରତି ଘର । ଘୋଷା ।

ମନକୁ ମୋଦକର କରୀଗମନା ରେ କର
ଧରିଛୁ ତୁ କର ପ୍ରତିକାର । ୧ ।

ସ୍ମିତ କୁନ୍ଦନ କୁନ୍ଦଦନ୍ତି ନ ଧର ଛନ୍ଦ
ମନ୍ଦ ଗତି ରାମାବର । ୨ ।

---

* ଲୁଆଇଁ—ନୁଆଇଁ ।

Digitized by srujanika@gmail.com

* ଇନ୍ଦୁ କୁମୁଦ ଭିନ୍ନ କର ରମଣୀ ରତନ
ଯତନେ କର ଏ ବିଚାର । ୩ ।

ଧର୍ମ୍ମ ମଣ୍ଡନ ଧର ଏ ଅଙ୍ଗୀକାର କର
କମଳମୁଖୀ ଏ ତ ସାର । ୪ ।

ନବ କିଶୋର ବାଣୀ ଶୁଣି ତୋଷ ରମଣୀ
ଭାଷେ ଶ୍ରୀ ସୋମନାଥ ସାରବର । ୫ ।

●



## ଶ୍ରୀକୃଷ୍ଣଙ୍କ ପ୍ରତି ସଖୀ

(ରାଗ—ପଞ୍ଚମ ବରାଡ଼ି)

ବଂଶୀଧର, କି ଅପରାଧ କରିଛି ସହ ମୋର । ପଦ ।

ଶଯ୍ୟନ ପୂର୍ଣ୍ଣି ସେ ଜର    ତାପେ ହୁଏ ଥରଥର
ତହିଁକି ପ୍ରକାରେ ହରପର ହେ । ୦ ।

ନାଗର ରତନ ଥାଉ    ତା ଦୁଃଖ ନ ଗଲା ଆଉ
ଝରଝର ନେତ୍ରୁ ବହେ ନୀର ।
ଯେତେ କହିଲେ ନ ବୁଝେ    ତୁମ୍ଭର ନାମକୁ ଭଜେ
ଉର ହାର ମଣେ ହର ହାର ହେ । ୧ ।

ଶୀର୍ଣ୍ଣ ହୋଇଅଛି ଗ୍ରାମ    ସେ ବିବେକୀ ଗୁଣ ଧାମ
ଚନ୍ଦ୍ର ମୁଖ ବିରସ ତାହାର ।
ନୋହିବାରୁ ତୁମ୍ଭ ସ୍ନେହ    କ୍ଷଣକୁ କ୍ଷଣକୁ ମୋହ
ଏ କି ଦଶା ଗଜଗମନା ରେ ହେ । ୨ ।

---

* ଇନ୍ଦୁ—ଚନ୍ଦ୍ର ।

Digitized by srujanika@gmail.com

✤ ପିକଭାଷୀ ମନ୍ଦହାସୀ ଗୁରୁ ଚତୁରା ସୁକେଶୀ
ହେଲ ଆସି ଯେତେ ନାରଖାର ।
କ ଗୁଣେ ତୁମ୍ଭଙ୍କୁ ରସି ଆନ ତାହାଙ୍କୁ ନ ଦଣି
ଭାସିଲାଟି ତୁମ୍ଭ ଗଲା ହାର ରେ । ୩ ।

ଏ ନୁହେଁ ପୀରତି ଖତି କେବଳ ଗ୍ରନ୍ଥକ ପତି
ଜାଣିବାରୁ ଭଲ ମରିବାର ।
ଶୁଣି ରମଣୀ ଆତୁର ହସିଲେ ଶ୍ୟାମସୁନ୍ଦର
ଭାଷେ ସୋମନାଥ ସାରବର ହେ । ୪ ।



## ଗୋପୀ ଚିନ୍ତା

(୧) ଶୀତକରମୁଖୀ ହେଲେ କାତର
ଶିବ ସୁମର ହୁଅନ୍ତ ଆକୁଳ ।

ଧୀରେ କହଇ କେଉଁ ରସବତୀ
ଧର ପରେ ଧୀର ନୁହେଁ ମୋ ମତି ।

ରହ ନୁହଇ କୃଷ୍ଣ ବଚନେ ଶୁଣି
ରାଇ ନେଉଛୁ କଂସ ରଜା ପୁଣି ।

ସ୍ତୁତି କରବା ଗୃହ ଅକ୍ରୂରକୁ
ରାହୁ ନ କର ଯେହ୍ନେ ଚକୋରକୁ ।

ଅପକୀର୍ତ୍ତି ପାଇବା କୃଷ୍ଣ ଗଲେ
ଅପ୍ରମାଦେ ବଞ୍ଚିଲୁ ଯାର ଭୁଲେ ।

---

✤ ପିକ—କୋକିଳ ।
(୧) ଶୀତକର—ଚନ୍ଦ୍ର ।

Digitized by srujanika@gmail.com

ଆବାଲ୍ୟରୁ ପାଳିଥିଲୁ ଯାହାକୁ
ଆଖି ଫୁଟାଇ ନେଉଛୁ ତାହାକୁ ।

ଈଶ୍ୱରଙ୍କୁ କୋଟି କଳ୍ପରେ
ଇଚ୍ଛା ସୁଖ ଯାଉଅଛୁ ଅଳ୍ପ ରେ ।

ଉର ଚନ୍ଦନ ଅଟନ୍ତି ଆମ୍ଭର
ଉଚ୍ଛନ୍ନ ଯେ ହେଉଛୁ ଗୋପପୁର ।

ଋଷି ଯେସନେ ଧୀବର ପାଶରେ
ହୃଷିକେଶ ଗଲେ ସେହି ଆଶାରେ ।

ଲୁଚିଯିବ ଆମ୍ଭର ଯେତେ ଶିରୀ
ଲୁବ୍ଧ ପାମର ନେବ ଯେବେ ଧରି ।

ଏବେ କି ବୁଦ୍ଧି କରିବା ମିତଣୀ
ଏହିକ୍ଷଣି କୃଷ୍ଣକୁ ଯିବ ଘେନି ।

ଐଶ୍ୱର୍ଯ୍ୟ ଯାଉଅଛୁ ଆମ୍ଭର
ଐର ତା ହେଲଣି ଭୂଜବୀର

ଓହନତ ଭର୍ଜିବା ଗୋ ତାହାର
ଔନମୁଖେ କରିବା ଗୁଳି ଗୋଳ ।

ଅହଂକାର କରି ଘେନି ନେଉଛୁ
ଅହତ କୁ ହତ କରି ଦେଉଛୁ ।

କଂଜ ନୟନ ଗୁଣ୍ଡିବା କେମନ୍ତେ
କହି ନୁହଇ ତାଙ୍କ ଗୁଣ ଯେତେ ।

ଖଳ ଦଇବ ଦେଉଛୁ କଷଣ
ଖଟିଥିବାକୁ ଅନୁକ୍ଷଣେ ମନ ।

ଗଵଗଞ୍ଜନ ଆମ୍ଭ ବନମାଳୀ
ଗୋବର୍ଦ୍ଧନ.ଧଇଲେ ହସ୍ତେ ତୋଳି ।

ଘନଶ୍ୟାମମଳିଆ ଚନ୍ଦ୍ରବଦନ
ଘରେ ରଖି ନ ହଏ କେଉଁ ଜନ ।

Digitized by srujanika@gmail.com

ଢର ଅରଇ ମୁଖକୁ ଗୃହିଁଲେ
ଓଜ ଖ୍ଣଇ ପତିବ୍ରତା ହେଲେ ।

ଚରଣରେ ଶୋହେ ହେମ ନୂପୁର
ଗୃଲନ୍ତେଣ କମ୍ପେ ତନୁ ଆମ୍ଭର ।

ଛୁଇ ପର ଖଟିଆଉ ଯାହାକୁ
ଛୁଉ଼ ଦେବା କେମନ୍ତେ ଗୋ ତାହାକୁ ।

ଜବା ଅଧରେ ମନ୍ଦ ମନ୍ଦ ହସି
ଜୀବ ଥିଲେ କ ହୁଅଇ ମୂରୁଛି ।

ଝୁଲ ବସିଲେ ଢନ ସରସିବ
(୨) ଝଷକେତନ ଅଧିକେ ବାନ୍ଧିବ ।

ଞସ୍ଯମ କରି କହୁଛୁ ସଙ୍ଗାତ
ଞଷ୍ଟେ ଫେରାଇ ଦାଅ ବ୍ରଜଦୂତ ।

ଟାଣ ଭଙ୍ଗିଯିବଟି ଗୋ ଆମ୍ଭର
ଟେକ ଗୃହିଁବା ବଦନ କାହାର ।

ଠଣ ସୁନ୍ଦର ଯଶୋଦା କୁମର
ଠିକେ ସର ନୁହଇ ପୁରନ୍ଦର ।

ଡର ମାଡ଼ିବ ଯମୁନାକୁ ଗଲେ
ଡୋଳା ପିଉଳା ଛୁଉ଼ ଏଥୁ ଗଲେ ।

ଢାଳ ଗୃହୁଥାଇ କେଉଁ ରଙ୍ଗରେ
ଢାଳ ଦେଉଥାଏ ସୁଧା ସଙ୍ଗରେ ।

ଅଣ ଆସୁଛୁ ହେବଟି ଏଣିକି
ଆଉ ନ ଛୁଉ଼ିବା ବେଣୁପାଣିକି ।

---

(୨) ଝଷକେତନ—କନ୍ଦର୍ପ ।

Digitized by srujanika@gmail.com

ଡରଡର ହେଲଣି ଗୋ ଡଗର
ଡୃଷ୍ଣା ବାଜଲଣି ସିଂହ ଦୁଆର ।

ଥଏ ନୋହୁଛୁ ଶୁଣି ଏହି ବାଣୀ
ଥାଇ କରିବା ଏଥେ କସ ପୁଣି ।

ଦାସୀପଣେ ଯିବା ତାଙ୍କ ସଙ୍ଗର
(୩) ଦର ହେବଟି ନ ଗଲେ ନକର ।

ଧନୁ ଉତ୍ସବ କରୁଛୁ ରାଜନ
ଧରି ନେଉଛୁ କପଟରେ ଜାଣ ।

ନଷ୍ଟେ କରି ପାରିବା ଯେବେ ଗୋଳ
ନେଇ ନ ପାରିବେ ଶ୍ୟାମସୁନ୍ଦର ।

ପଡ଼ୁ ପଛକେ ଏଥି ପରମାଦ
ପାର କରିବାକୁ ଅଛୁ ଗୋବିନ୍ଦ ।

ଫନ୍ଦା କରିଥାଇ ଆମ୍ଭେ ଯାହାକୁ
ଫାନ୍ଦେ ପକାଇ ନେଉଛୁ ତାହାକୁ ।

ବ୍ରଜମଣ୍ଡନ ଚତୁର ନାଗର
ବୃନ୍ଦାବନ ଗଗନ (୪) ଶଶଧର ।

ଭଲ ନାହିଁ କହିବା ନଟବର
ଭାବେ ରଖିବା କହ୍ନାଇ ପାଖର ।

ମତେ ଏକ ବୁଦ୍ଧି ସଖୀ ଦିଶୁଛୁ
ମନେ ତୁମ୍ଭର କେମନ୍ତେ ଆସୁଛୁ ।

ଯିବାକୁ କେହି ଅଛୁ ମହୀରେ
ଯାଗ କରୁଛୁ ଗୋପ ନଗର ରେ ।

ରଖିଅଛୁ କେତେ ଦୁଷ୍ଟ ସହାର
ରହି ପାରିବ କେହୁ ଦେହ ଧରି ।

---

(୩) ଦର—ଭୟ, (୪) ଶଶଧର—ଚନ୍ଦ୍ର ।

Digitized by srujanika@gmail.com

ଲାବଣ୍ୟନିଧି ଆମ୍ଭ ଗୋପୀନାଥ
ଲଭିଥାଉଁ ଗଲେ ହେବା ଅନାଥ ।

ବାସ ବସ ବେଶ ପ୍ରାପ୍ତେ ହୋଇବ
ବ୍ରଜେ ସହାସ ଆଉ କେ କରିବ ।

ଶଶୀ ମଳି ଯେହ୍ନେ ଚନ୍ଦ୍ର ଆଶାରେ
ସଖି ମରିବା ମଦନ ଦଶାରେ ।

ସହି ନ ଯାଉ ଯେହ୍ନେ (୫) କମ୍ବୁପାଣି
ଶିବ ଶିରରେ (୬) ନହୁଡ଼ିବା ପାଣି ।

ସ୍ମର ଦୁର୍ଗାଙ୍କୁ ମାନ ଉପଭୋଗ
ସ୍ମରଣାନ୍ତକ ସଥ ଆମ୍ଭ ଭୋଗ ।

ହର ଗଉରୀ ପାଦେ ଦେଇ ଚିତ୍ତ
ହାସ୍ୟ ନୋହିଁ ଯେମନ୍ତେ ଜଗତ ।

ଶିଳ ବ୍ରହ୍ମାଣ୍ଡଧର ପାଦ ଚିନ୍ତ
(୭) କ୍ଷିତିପତି ସୋମନାଥ ବଦତି ।



## ଶ୍ରୀରାଧାଙ୍କର ସଜନୀଙ୍କୁ ଶ୍ରୀକୃଷ୍ଣଙ୍କ ରୂପ ପ୍ରଦର୍ଶନ

କି ଗୋ ସଜନୀ ! ଦେଖ ଏ ନନ୍ଦ କୁମର,
ତାଳୁରେ ମୟୂର ଚନ୍ଦ୍ରିକା ଚୂଳ ଲୋ ସଜନୀ । ଘୋଷା ।

ବେଣୀ ଲୋଟେ ପୃଷ୍ଠ ପର     ନାସାରେ ମୋତି ତା ଦିଶେ ସୁନ୍ଦର
ହୃଦୟ ହୁଏ ଅଥିର ଲୋ । ୧ ।

---

(୫) କମ୍ବୁପାଣି – ବିଷ୍ଣୁ, (୬) ନହୁଡ଼ିବା – ଛାଡିବା, (୭) କ୍ଷିତିପତି – ରାଜା ।

Digitized by srujanika@gmail.com

କର୍ଣ୍ଣରେ କୁଣ୍ଡଳ ତା'ର, ହୃଦରେ ଅଛୁ ତା ପଦକ ହାର ଲୋ, ସଜନୀ !
ମୋହନ ମୁରଲୀ କର ଲୋ । ୨ ।

ପିନ୍ଧିଅଛୁ ପୀତାମ୍ବର, କଟିରେ ଅଛଇ କିଙ୍କିଣ ସାର ଲୋ, ସଜନୀ !
ମୋହୁଅଛୁ ଛନ୍ନ ପୁର ଲୋ । ୩ ।

ପଦ୍ମରେ ଶୋହେ ନୂପୁର, ଝୁଲନ୍ତେ ଶବଦ କରେ ସୁସ୍ୱର ଲୋ, ସଜନୀ !
ଶୁଣି ପୀଡ଼େ ପଞ୍ଚଶର ଲୋ । ୪ ।

ତା ବିନା ଆନ ମୋହର, କିଛୁ ନ ଦିଶଇ ଘର ବାହାର ଲୋ, ସଜନୀ !
ଏହା ଗୀତେ ସାରବର ଲୋ । ୫ ।



## ଶ୍ରୀକୃଷ୍ଣଙ୍କ ରୂପୋକ୍ତି

( ରାଗ-ଖଣ୍ଡିତା )

ବ୍ରଜନାଗରୀବର
ରଙ୍ଗରସେ କିଣା ହୋଇଲି ତୋର । ଘୋଷା ।

ପାଲିଟି ବସି ବିପରୀତରେ ରସି ବୋଲଇ କରି ଚୁମ୍ବନ ଦେବାର
(୧) ଅପାଙ୍ଗେ ଅନାଇ (୨) କରଜ ଚଳାନ୍ତେ ଚମକ ପଡ଼ଲା ଗୁଡ଼ ମୋହର । ୧ ।

କନକ ଗାତ୍ରରେ ନ ରହଇ ଚିର କମ୍ପଇ ତୋ ଅଙ୍ଗ ହୋଇ ଅଥିର
ବିମ୍ବ ଅଧରରୁ ଅମୀୟ ଚଖାଇ ମଦନ ମାଦକେ ଥର ଥର । ୨ ।

କେତକୀ କୁସୁମେ ଜୂଡ଼ା ପାରିଥାଉ ଫିଟିପଡ଼େ ସେହୁ ରସନାପର
ଉରଜଭରି ଉରଜରେ ନଗାଇ ଜଡ଼ିବାର ଦେଖି ହୋଏ କାତର । ୩ ।

---

(୧) ଅପାଙ୍ଗ—ବକ୍ର ଦୃଷ୍ଟି, (୨) କରଜ—ନଖ ।

Digitized by srujanika@gmail.com

ଇସି ଇସି ବାଣୀ ଭାଷିବାର ପୁଣି ଅନଙ୍ଗ ଅଙ୍ଗରୁ ହୁଅଇ ଦୂର
କଟୀର କିଙ୍କିଣି ବାଜେ କଣି କଣି ନାସେ ନାଚେ ମୋତି ହୋଇ ପ୍ରଖର ।୪।

ରସିକ ମଣ୍ଡନ କହନ୍ତୁ ରସିକା ନାହିଁ ନ ଥିବେ ତ୍ରିଲୋକ ଭିତରେ ।
ସୋମନାଥ ସିଂହ ନରପତି ଭାଷେ ରାଧା ବୋଲେ ପ୍ରୀତି ନୋହିବ ଚର ।୫।



## ବିରହିଣୀ ଶ୍ରୀରାଧା

ନ ଜାଣି ମୁହିଁ ମୁହିଁ ହଜି ଗଲି ତି, ନବକିଶୋରରେ କରି ପୀରତି (ଘୋଷା)
ଅତି ନିଷ୍ଠୁର କଲା ତାର ମତି, ମୋତେ ହେଲା ଏବେ ଅପକାରତି ।୧।

ଘର ବର ଦୂର କରି ମୁହିଁ ତି, ବୁଲୁଥାଇ କୁଞ୍ଜବନରେ ନିତି ।୨।
ଜରତି ବଚନ ଶୁଣି କରତି, ହଉଥାଇ ଏବେ ମୋହର ସ୍ତୁତି ।୩।

ତା ବିନା ନ ସରେ ଦିବସ ରାତି, ଝୁରି ଝୁରି ତନୁ କ୍ଷୀନ ହେଲାତି ।୪।
ସୋମନାଥ ବୀରବର ନୃପତି, ଭାଷେ ବୋଲି ବାର ହୋଏ ଯୋଗତି ।୫।



## ଶ୍ରୀରାଧାଙ୍କ ନବାନୁରାଗ

ସେ ବ୍ରଜ ନାଗରକୁ ଗୋ ! କେହୁ ଆଣିଦେବ ମୋରେ । ପଦ ।

ଦେଖିଥିଲି ଦିନେ ଏ ଗୋପ ଦାଣ୍ଡରେ ଆସୁଥିଲେ ହରି ବତ୍ସ ସଙ୍ଗତରେ
ଗୋପାଳ ମଧ୍ୟରେ ଚନ୍ଦ୍ରିକା ପରାଏ
ବଂଶୀ ଧରିଥିଲେ କରେ । ୧ ।

ଶିରରେ ମୟୂର ଚନ୍ଦ୍ରିକାର ଚୂଳ ନାସେ ଶୋଭିବନ ଦିଶେ ସିନ୍ଦୁ ଫଳ
କର୍ଣ୍ଣରେ ଜଡ଼ିତ ମର୍କତ କୁଣ୍ଡଳ
ଭାଲେ ଗୋରଚନା ଗାରେ । ୨ ।

Digitized by srujanika@gmail.com

ହୃଦରେ ପଦକ ହସ୍ତରେ କଙ୍କଣ      କଟୀରେ କିଙ୍କିଣୀ ବାଜେ ରୁଣଝୁଣ
ପଦ୍ମରେ ନୂପୁର ଦଶେ ଶୋଭାବନ
ଚଳି ଚଲେ ଧୀରେ ଧୀରେ । ୩ ।

ପିନ୍ଧି ପୀତାମ୍ବର ଯଶୋଦା କୁମର      ମନ୍ଦେ ମନ୍ଦେ ହସ ସେ ବିମ୍ବ ଅଧର
ରତିପତି ଜିଣି ଦିଶଇ ସୁନ୍ଦର
ନେତ୍ରେ ରଖି ତୀକ୍ଷ୍ଣ ଶରେ । ୪ ।

ନ ରହଇ ମତି ମନେ ପଡ଼ିଲେଟି      ହୋଇ ପଛେ ମୁହିଁ ପାଇବ ଅକୀର୍ତ୍ତି
ଭଣେ ସୋମନାଥ ଅନଗୁଳପତି
ଭେଟାଇବ ଶ୍ୟାମ ବାରେ । ୫ ।



## ବିରହବିଧୁରା ଶ୍ରୀରାଧା

ଶ୍ୟାମସୁନ୍ଦର ରସେ ରସିଲି ଗୋ      ରସେ ରସାଇ ତନୁକୁ ନାଶିଲି ଗୋ (ଘୋଷା)
କେଶରୀ ମଧ୍ୟ ଗତି      ଦେଖି ନ ରହେ (୧) ଧୃତି
ଆସ୍ତୃତ ନ ରଖି ମୁଁ ହସିଲି ଗୋ । ୧ ।

ମଣିଥିଲି ପୀରତି କାରତି ଗୋ      ଏବେ ଲୋକେ ହୋଇଲା ଅପକୀରତି ଗୋ
ରଖିଲି ତା ଅଧର      ଲେଖିଲି କି ମଧୁର
ସାଗରେ ସହୀ ଏବେ ଝାସିଲି ଗୋ । ୨ ।

ସ୍ନେହ ନୁହଇ ତାର ମୁରୁଛି ଗୋ      ଯୁବାମନ ନୟନ ତାର ବଡ଼ିଶୀ ଗୋ
ନ କଲି କେବେ ଭିନ୍ନ      ଦେଲି ତା'ଠାରେ ମନ
ଏବେ ମରଣ ପଥେ ବସିଲି ଗୋ । ୩ ।

(୨) ମଦନ ମନୁ ଦୁଇ ସଦନ      ସଙ୍ଗେ ଥିଲେ ମନ ନୋହେ (୩) ସଦନ
ପାଶୋରଇ କୁଳକୁ      କଳଙ୍କ ସେ କାଳକୁ
ଲଗାଇ ଏବେ ଭାଳ ବସିଲି ଗୋ । ୪ ।

ଭନ୍ନଭେ ଶ୍ରୀ କଶୋରୀ ଭଷନ୍ତ ଗୋ      ନନ୍ଦନନ୍ଦନ ନୟନେ ନାଚନ୍ତ ଗୋ
ସୋମନାଥ ନୃପତି      ଏ ରସରେ ବଦନ୍ତ
ରାଧାକୃଷ୍ଣ ପ୍ରୀତକ କହିଲି ଗୋ । ୫ ।



---

(୧) ଧୃତି—ଧୈର୍ଯ୍ୟ, (୨) ମଦନ—କନ୍ଦର୍ପ, (୩) ସଦନ—ଗୃହ ।

Digitized by srujanika@gmail.com

## ବିରହିଣୀ ଗୋପିକା

ଚନ୍ଦ୍ରା ପାଇଲା ଏମନ୍ତି ଘନ ବରଷା ଦେଖି । ପଦ ।
ଶୁଣି ହରିଣନୟନୀ ଭଲ ହେଲେ ବେଣୁପାଣି
ଆମ୍ଭେ ସବୁ ଅଭାଗିନୀ ନ ଦେଖିଲୁ ଶ୍ରୀପତି । ୧ ।
ପିକ ହେଲେଣି ଉବଦ ଶୁଣି ଘଡ଼ ଘଡ଼ି ନାଦ.
ମୟୂର ହେଲେ ଉନ୍ମାଦ କା ଦେହ ସହିବତି । ୨ ।
କେବଣ କନକଗାତ୍ରୀ ଲୋତକ ଧାର ପକାନ୍ତି
(୧) ଝିନ ବାସ ଗଳି ଛନ୍ତି ଫୁଟି ଉର ଦଶନ୍ତି । ୩ ।
ବିରହରେ ସର୍ବ ବାଳୀ କୃଷ୍ଣଙ୍କୁ ଦିଅନ୍ତି ଗାଳି
ତୋ ଲାଗି ହେଲୁ ଦୋଷୀ କପଟୀ ଗୁଣ୍ଡି ଗଲୁତି । ୪ ।
ଦୂତିକା ଶୁଣି ବୋଲନ୍ତି ନ କର ରାଧିକା ଭ୍ରାନ୍ତି
ସୋମନାଥ ରାଜା କହେ ଆଣିମି ଯଦୁପତି । ୫ ।

●

## ବିରହବିଧୁର ଶ୍ରୀକୃଷ୍ଣ

ସଜନୀ ରମଣୀ ମଣି ପାଇଁ ମୋର ଜୀବ ଯିବ ରେ । ଘୋଷା ।
ଗୁଣ୍ଡି ନୁହେଁ କେବେ ତାର ଭାବ, ବନ୍ଧୁ ଅଟେ ମୋର ଜୀବ
ଗଜଗମନାର ସ୍ନେହ ଖୋଜିଲେ ନୋହିବ ରେ । ୧ ।
ନବୀନା ବିନା ନାହିଁ ଆଶା, କରିଛୁ କେତେ ଭରସା,
ମୋତିଦନ୍ତୀ ମୀନଦୃଶା ପରି ରସାରେ ନ ଥିବ ରେ । ୨ ।
ପାଖେ ରସବତୀ ଅଛୁ, ସ୍ମର ତାପ ନୁହେଁ କିଛୁ,
ହସିଦେଲେ ବିମ୍ବଓଷ୍ଠୀ ସୁଧା ବରଷି ପଡ଼ିବ ରେ । ୩ ।
ରସିକା ଚତୁରୀ ସେହୁ, ଯୁବତୀରେ ରତ୍ନ ଯେହୁ ।
ଦେଖିଲେ କହ ଧଇର୍ଯ୍ୟ, ଆଉ କେବା ଧରିବ ରେ । ୪ ।
ସୋମନାଥ ବୀରବର, ଭଣେ ଶ୍ୟାମ କାମାତୁର,
ମହ୍ମମଣ୍ଡନାକୁ କେହୁ, କହ ଆଣି ଦେବ ରେ । ୫ ।

●

---

(୧) ଝିନ—ସୂକ୍ଷ୍ମ ।

Digitized by srujanika@gmail.com

## ପ୍ରେମରେ ଲଜ୍ଜାବତୀ ଶ୍ରୀରାଧା

ସଜନୀ ବୁଡ଼ିଗଲା ଲାଜ ରେ । ଘୋଷା ।

ସଜାଡ଼ୁଥିଲି ବେଣୀ, ଯତନେ ମୋର ପୁଣି
ମିଳିଲା ବେଣୁପାଣି ଆଜ ରେ । ୧ ।
ଚମକିଲା ମୋ ତନୁ, ଦେଖିଣ ନନ୍ଦ ସୂନୁ,
ବୋଇଲା, ଭ ଲ କରି ସାଜ ରେ ।
ବସନ କରେ ଧରି ଇହଡ଼ିକ ତରି,
ନୋହିଲି ଆଉମୁହିଁ ସଜ ରେ । ୨ ।
ଯେତେ କହିଲା ସେହି, ତା' ନ ଶୁଣିଲି ମୁହିଁ
ଶୁଣିଲେ ନ ରହନ୍ତା ହେଜ ରେ । ୩ ।
ସୋମନାଥ ନୃପତି ସିଂହ ରସେ ଭ୍ରସନ୍ତ
ପ୍ରୀତି ସିନା ଗାରତ ମଜ୍ଜ ରେ । ୪ ।



## ସଖୀ ପ୍ରତି ବିରହ-ଉତ୍କଣ୍ଠିତା ରାଧା

କାଖେ କୁମ୍ଭ ଘେନି ତରତର ହୋଇ
ପଳାଇ ପାଇଲି ଲାଜ
ଗୋ ସଜନୀ, କି ଛବି ଦେଖିଲି ଆଜ । ପଦ ।
ଯହିଁକି ଡରଇ ତା ଆଗେ ପଡ଼ଇ
ଗୃହିଁ ଚମକେ ଉରଜ
କି ବୁଦ୍ଧି କରିବି କେମନ୍ତେ ବଞ୍ଚିବି
ପୋଡ଼ୁ ଏ ଯୁବା ଧଇର୍ଯ୍ୟ ଗୋ । ୧ ।
ଶାଶୁ ମୋର ଦୁଷ୍ଟ ନଣନ୍ଦ ଗରିଷ୍ଠ
ନ ସହନ୍ତି ମୋର ଖିଜ
ବିଳମ୍ବ ହୋଇଲେ ବୋଲନ୍ତି ଆଜ ତୁ
ଭେଟିଲୁ ନନ୍ଦତନୁଜ । ୨ ।

Digitized by srujanika@gmail.com

ଏ ଗୋପ ନଗରେ ଯେତେ ନରନାରୀ
ବୋଲନ୍ତି ରାଧା କଳଙ୍କି
ଏହାଙ୍କ ଧମକ ମୁରଲୀ ଚମକ
ଶୁଣି ହୁଅଇ ଅଧୈର୍ଯ୍ୟ । ୩ ।
ଅପବାଦ ବାଣୀ ସହି ନୋହେ ପୁଣି
ପ୍ରବନ୍ଦ ମେ କର୍ଣ୍ଣ ହୃଦ
କଣାକାଳେ ମୁହିଁ ବାହାର ନୋହଇ
ଯହିଁ ଯେତେ ଥିଲେ କାର୍ଯ୍ୟ । ୪ ।



## ଶ୍ରୀକୃଷ୍ଣଙ୍କ ଉକ୍ତି

( ରାଗ—ଆରଭୀ । ତାଳ—ଆଦି )

ରାହାଁ ପ୍ରାଣ-ଈଶ୍ୱରୀ, ରେ
କୁରଙ୍ଗୀନୟନା ଦେଖି ଗଲି ମୁଁ ସରି ରେ ।
ସ୍ମର ସ୍ମର ଶର ଆୟୁଷ ନେଲା ମୋର,
ମରମ ଦହୁଅଛି ଜାଣ ବନ୍ଧୁ ଏଥର । ଘୋଷା ।

ନାଗସ୍ୱରବର ଚତୁରୀ, ରମଣୀ-ଧନ-ହୃଦ ହେଲଣି କତୁରୀ ।
ପୀରତି କର ରସେ, କୀରତି ରହୁ ଦେଶେ
ଧୀର କାମନା ପାଶେ, ଥିବ ବସି ଲାଳସେ
କରି ବଡ଼ କୋହ ତର୍ଜିଲି ଏଥର,
ଧରି ପ୍ରାଣ ନେବ ଜାଣ ଏ କକର,
ଚନ୍ଦ୍ରବଦନା ମୋ ଧେନ ଧେନ ଭୂଷା
ଆଶା ନ ଭାଙ୍ଗ ତୁ ଆରେ ନାଗସ୍ୱଭୂଷା । ୧ ।

କେତକୀ ଗୋରୀ ସୁକେଶୀ, କେଶରୀ ମଧ୍ୟା ନାହିଁ
ସରି କେ ପ୍ରେୟସୀ,
ଗୁଣି ହେଉଛି ବସି, ବନ୍ଧୁ ନାମକୁ ଘୋଷି
ଘୋଷିଲିଠାରେ ଦୋଷୀ, କଲୁ ରେ ମଦାଳସୀ
(ପଡ଼ି) ନ କର ହେଳା ସୁକୁନ୍ଦରଦନା,
ଭାଷ ମଧୁର ହାସ ଯାଉ ଏ ମୋ ବେଦନା ।
ଦାସକୁ ତୋର ନାଶ ନ କର,
କର କରୁଣା ଆରେ ଧରୁଛି ତୋର କର । ୨ ।

Digitized by srujanika@gmail.com

ସୁନ୍ଦରୀ ମଣ୍ଡମଣ୍ଡନା ନୁହେଁ ମୁଁ ଦୋଷୀ
ଗଣ୍ଡେ କରଲୁ ମଣ୍ଡନା, ବାଣାକଣା ବଚନା
ମୁଁ ତୋ ଅଟଇ କଣା, କାହିଁକି କରୁ ଘୃଣା
ଏ ତ ହୋଇଛୁ ଊଣା, ସହି ନ ପାରିବ ଆଉ ଏଣିକି,
ସରଗଲ‌ିଟି ଆ ତୁ ଜାଣିକି ।
ପତିମୋହନାର ଏ କି ପାତ ଆଜ,
ତା ଦେଖି ହଜି ଯାଉଅଛୁ ମୋହର ହେଜ । ୩ ।

ପାରିଲେ ଯଶ ତୁ ରଖ,
ତୁ ମୋର ସାହା ହେଲୁ ବିବେକୀ କରେଖ ।
କରେ ନ ଆଉ ବାସ, ଆସି ମୋ ଅଙ୍କେ ବସ
ଭାଷ ମଧୁର ହାସ ଭଜୁ ସୁନ୍ଦର ସାହସ
ଶୁଣି ପ୍ରିୟ ବାଣୀ ରାଧିକା ହସିଲେ
ତେଜି ମନୁ ମାନ ଶ୍ୟାମ କୋଳେ ବସିଲେ ।
ବୀର ଶ୍ରୀ ସୋମନାଥ ନୃପତି ଭାଷିଲେ
ମୋହନ ମନ ଡାପ ଶ୍ରୀମତୀ ନାଶିଲେ । ୪ ।

●

## ଶ୍ରୀରାଧାଙ୍କର କୃଷ୍ଣ ରୂପାନୁରାଗ

ଶ୍ୟାମର ନଟବର ରୂପ ଚାହିଁ, ଦେଖିଲୁ ଦେଳୁ ଚଉ ହେଲୁ ବାଇ ! ଘୋଷା ।
ଶିର ପରେ ଚନ୍ଦ୍ରିକା ଚୂଳ କରଛୁ ଡକା
ମାର ମାରୁଛୁ ସହି ନ ପାରଇ । ୧ ।
ସୁନ୍ଦର ମୁଖ ତାର ହସିଲେ ଧୀର ଧୀର
ତନୁ ଆନନ୍ଦେ ଜର ଜର ହୋଇ । ୨ ।
ନାନା କୁସୁମେ ବେଣୀ ସଜାଇ ଥାଏ ପୁଣି
ନୟନ ଠାର ମନ ମୋହି ନେଇ । ୩ ।
କ୍ଷୀଣ କଟିରେ ହଡ଼ି— ଆଣି ଯତନେ ଭିଡ଼ି
ଶବଦେ ହୃଦ ହେଉଥାଏ ଦହି । ୪ ।
ସୋମନାଥ ନରେନ୍ଦ୍ର ନୃପ କୁଳରେ ଚନ୍ଦ୍ର
ଭାଷେ ସଖୀ ବଂଶୀରେ ନୋହି ରହି । ୫ ।

●

Digitized by srujanika@gmail.com

# ଶ୍ରୀରାଧାଙ୍କ ରୂପାନୁରାଗ

ନଟବରନାଟ ପୋଛ ଶର ପରେ ସନ୍ଧି । ପଦ ।

ନ ରହେ ଆୟତ୍ତ ମୋର  ଦେଖିଲେ ତନୁ କାତର
ହେଉଥାଏ ତାର ରୂପ ଗୃଦ୍ଧି ।
ଶ୍ୟାମଘନ ନେତ୍ର ବାଣ  ବାଜିଲେ ହଜଇ ଜ୍ଞାନ
ବରତ କେହ୍ନେ ପାରଇ ସନ୍ଧି । ୧ ।

ନବୀନ କୁସୁମ ଘେନ  ଯତନେ ସଜାଇ ବେଣୀ
(୧) ସିନ୍ଧୁଫଳ ଲମ୍ବି ପଡ଼ୁଥାଇ
ନୂତନ ବସ୍ତ୍ର ତାର  ବରଦ୍ଧଣୀ ଦକା ସାର
ରଙ୍ଗାଧରେ ହସ ହସ ହୋଇ । ୨ ।

ଲଗାଇ କରେ କଙ୍କଣ  ବାହେ ବାଜୁବନ୍ଧ ବାଣ
ଥିବାରୁ ଅତ ଶୋଭାକୁ ପାଇ
ନାସାର ବସଣୀ ପୁଣି  ଧ୍ଵନମଣି ତେଜ ଜିଣି
ଲୁଲିବାରୁ ତା ଜୀବନ ଦନ୍ଧି । ୩ ।

ଲାବଣ୍ୟନିଧି ସୁନ୍ଦର  ପିନ୍ଧି ପୀତାମ୍ବର (୨) ଚୀର
କଟୀରେ କଙ୍କିଣୀ ବାଜଇ
ନୂପୁର କରଇ ଟାଣ  ଭାଙ୍ଗେ ଯୁବା ଦମ୍ଭପଣ
ମଦାଳସୀ ଚାଲି ରସାଇ । ୪ ।

ଲଗାଏ ଭେଲକି ମନ୍ତ୍ର  ଭଲ ଶିଖିଅଛି ଯନ୍ତ୍ର
କନକାଙ୍ଗୀ ଚାଲି ଭୁଲାଇ
ନରପତ୍ର ସୋମନାଥ  ବୀରବର ଭାଷେ ଗୀତ
ସଖୀ ବୋଲେ ମୋ ଆୟତ୍ତ ନାହିଁ । ୫ ।



(୧) ସିନ୍ଧୁଫଳ—ମୁକ୍ତା । (୨) ଚୀର—ସୂକ୍ଷ୍ମ ବସ୍ତ୍ର ।

Digitized by srujanika@gmail.com

## ଶ୍ରୀରାଧାଙ୍କ ପ୍ରତି ଶ୍ରୀକୃଷ୍ଣ

( ରୂପ ପ୍ରଶଂସା )

ରହ ବୃଷଭାନୁ କୁମାରୀ, ଏକା ହୋଇ ନ ଯା ଯମୁନା ବାରି । ପଦ ।
ଏ ବ୍ରଜନଗରେ ଯେତେ ନାଗରୀ, ତୋର ରୂପକୁ କେହି ନୋହେ ସରି । ୧ ।
ନବୀନ ବୟସୀ କନକ ଗୋରୀ, ଦୁଯେ ଅଟେ ତୋ ଯଉବନ ଭରି । ୨ ।
ପୂର୍ଣ୍ଣଇନ୍ଦୁ ଜିଣି ମୁଖ ତୋହରି, ସ୍ୱପନ୍ତେ ଅମିୟ ପଡ଼ଇ ଝରି । ୩ ।
ହରିରପୁ ଜିଣି ମୁଖ ତୋହରି, ନେତ୍ର ଅଟେ ତୋର କାମ କଟାରୀ । ୪ ।
କୃଷ୍ଣ ବାଣୀ ଶୁଣି ହସି ଚତୁରୀ, ସୋମନାଥ ରାଜା କହେ ବିଚାରି । ୫ ।



## ଶ୍ରୀକୃଷ୍ଣଙ୍କ ଗୃଢୋକ୍ତି

ରଙ୍ଗିନୀ ରଙ୍ଗ ଦିଅ ତୁ ଆସ ପାଶ ମୋର ରସ ରେ । ଘୋଷା ।
ବଞ୍ଚିବ ନଶି ଅଙ୍କରେ ବସି
କମଳମୁଖୀ ତୁ ମୋ ସାର ରେ ।
ବଧୂଳି ଓଷ୍ଠରେ ଚୁମ୍ବନ ମଣ୍ଡିବ
କାମ ତାପରୁ ହେବ ଦୂର । ୧ ।
ପକାଇ ସ୍ତୁତି ଉନ୍ନିଦ୍ରେ ରାତି
ମାତି ନବୀନା ଉନ୍ମାଦରେ
ସୁତୀକ୍ଷ୍ଣ ❊ କରଜ ଚଳାଇ ଉରଜ
ଚମକି ଯିବ ସ୍ତୁତି ପର । ୨ ।
ଛନ୍ଦଣ ପାଦ ହୋଇ କୁମୁଦ
ତନୁ ହେବ ଥର ଥ ରେ
ବେଢ଼ି ବେନି କରେ ନାନା ସୁରତରେ
କରି କୀରତି ବୁହିଅ ରେ । ୩ ।
ସୋମନାଥ ସିଂହ ବୀରବର ଭାଷେ
ରାଧା ପାଶେ ବେଣୁଧର ରେ
ଧରଣ କର ମଧୁର ଗୀର
କହନ୍ତି ନାଗରବର ରେ । ୪ ।



---

❊ କରଜ — ନଖ ।

Digitized by srujanika@gmail.com

# ଗୋପୀ ସମ୍ବାଦ

କେଣେ ଜଳ (୧) ଲଇବା ପୁଣି
ଯମୁନା ତଟେ ମୁରଲୀପାଣି । ପଦ ।

ଦେଖି ନଟବର ଲଗାଇବ ହଟ
ବୋଲିବ କାହିଁକି ଆସ ମିତଣି !
ଦେଇଗଲେ ମୂଲ ଛାଡ଼ିଦେବା ବାଟ
ନୋହିଲେ ଘରକୁ ଯାଅ ସଜନି ! ୧ ।
କେତେ ଆଉ କଥା ଲଗାଇବ ସେହି
ଉତ୍ତର ହୋଇଲେ (୨) ବୋଲଣା ଶୁଣି
ଯେତେ କହିଲେ ତ ଜିଣି ନ ପାରିବା
ମୋହିନେବ ତାର ବାଙ୍କ ଚାହାଁଣୀ । ୨ ।
ବଡ଼ ପରମାଦ ନନ୍ଦର ନନ୍ଦନ
ହସି ହସି କରି କହିବ ବାଣୀ
ସୁଧା (୩) ନହୁଡ଼ିଲା ପରି ଲାଗୁଥିବ
ଅଧିକେ ବାନ୍ଧିବ ମଦନ ପୁଣି । ୩ ।



# ଶ୍ରୀରାଧାଙ୍କର ରୂପାନୁରାଗ

ଶ୍ୟାମ-ଶୋଭାକୁ ଜିଣି
କାହିଁ ନ ଥିବେ ଖୋଜିଲେ ପୁଣି । ପଦ ।

ଶଶୀ ମୁଖେ କରେ ହାସ ରେ
ଆନନ୍ଦ ହୁଅଇ, ଏ ମୋହର ମନ
ଦୁଃଖ ହେଉଥାଏ ନାଶ ରେ । ୧ ।
କେକୀ ପୁଚ୍ଛ ଶିର ପରେ
ପଛପଟେ ବେଣୀ, ଲମ୍ବି ପଡ଼ୁଥାଏ
ହୃଦରେ ମୁକୁତା ହାର ରେ । ୨ ।

(୧) ଲଇବା – ଆଣିବା, (୨) ବୋଲଣା – ଗାଳି, (୩) ନହୁଡ଼ିଲା – ଢାଳିଲା

Digitized by srujanika@gmail.com

ଠେକ ନାସାରେ ବସଣୀରେ
କଟୀରେ ବାଜଇ, କ୍ଷୁଦ୍ର କଙ୍କଣୀ ଯେ
ହୃଦସ୍ଥ ହୁଅଇ ହାଣି ରେ । ୩ ।
ହସ୍ତେ ବଳୟ କଙ୍କଣ
ପୀତାମ୍ବର ପଟ ପିନ୍ଧିଛୁ କାଛୁଣ
ପୟରେ ନୂପୁର ପୁଣ ରେ । ୪ ।
ସଖୀ ହେଉ ପଛେ ଦୋଷ
ସେ ବ୍ରଜସୁନ୍ଦର, ଲଗି ଜାଣ ସଖି ※
ନଷ୍ଟସ୍ତେ ହୋଇବ ନାଶ ରେ । ୫ ।



## ଶ୍ରୀକୃଷ୍ଣଙ୍କର ରୂପାନୁରାଗ

ଆରେ ରସରଙ୍ଗୀ,
ଆଜ ଦେଖିଲି ନୂଆ ଭଙ୍ଗୀ ରେ । ଘୋଷା ।
ଶୋଭା ପାଉଛୁ ବେଣୀ ନୂତନ ଘନ ଜିଣି
ଭଲ ସାଜିଛୁ ଶିଖିପାଙ୍ଗୀ ରେ । ୧ ।
ତଥି ଉପରେ ଝରା ଦିଶୁଛୁ କେତେ ତୋରା
ଯୋଗୀ ଯୋଗ କି ସିବ ଭଙ୍ଗି ରେ । ୨ ।
ପ୍ରକାଶିବାରୁ ହାସ ମୋହୁଅଛୁ ମାନସ
ବଧୂବଦନା ପ୍ରିୟ ସଙ୍ଗୀ ରେ । ୩ ।
ଏକେ ଉରଜ ଭାର (୧)ଝିନ ବାସରେ ପୂର—
କର ଦିଶୁଛୁ ଉତ୍ତମାଙ୍ଗୀ ରେ । ୪ ।
ଶ୍ରୀ ସୋମନାଥ ଭଣି ଶ୍ୟାମସୁନ୍ଦର ବାଣୀ
ଶୁଣି ହସିଲ କୋମଳାଙ୍ଗୀ ରେ । ୫ ।



---

※ ଭିନ୍ନପାଠ — ଭଣେ ସୋମନାଥ ବୀରବର ସିଂହ ।
(୧) ଝିନବାସ—ପତଳା ଲୁଗା ।

Digitized by srujanika@gmail.com

## ଶ୍ରୀକୃଷ୍ଣଙ୍କ ସହ ଗୋପୀମାନଙ୍କ ହୋରି

ବରଜନାରୀ, କୁଞ୍ଜବନେ ଗିରିଧାରୀ,
ଆସ ସହଚରୀ, ଖେଳିବା ଗୋ ହୋରି, ବୋଲି ଡାକଇ ବାଂଶରୀ ।୦।
ଶୁଣି କରି ଡାକ, ହୋଇଲେ ଉତ୍ସୁକ, ଚଉକୁ ହରଷ କରି
କେ ବୋଲଇ ମିତ, ଆସ ଗୋ ତୁରିତ, ବୋଲି ଧାମନ୍ତି ଚତୁରୀ । ୧ ।
କେଉଁ କଞ୍ଜନେତ୍ରୀ, ଅବିର ଧରନ୍ତି, ଫୁଲ ଧନୁ କେହୁ ଧରି
କା ହାତେ କଂସାଳ, କେ ଅବା ମର୍ଦ୍ଦଳ, ଶିଙ୍ଗା ବଇଁଶୀ ମହୁରୀ । ୨ ।
ସବେ ଚନ୍ଦ୍ରହାସୀ, ନବୀନ ବୟସୀ, ଏକେ ସେ ତ ସୁକୁମାରୀ
ବେଶ ଅସମ୍ଭାଳ, ବାସ ଲେଟେ ତଳ, ଗୁଳି ଗଜପତି ଧରି । ୩ ।
କେ କାହାକୁ ବଳି ଯାଇ ପାଶେ ମିଳି ବେଢ଼ିଲେ ଦେଖି ଶ୍ରୀହରି
ହରଷ କରଣ ନଟବର ମନ କଉତୁକେ ଫଗୁ ମାରି । ୪ ।
ସୋମନାଥ ସିଂହ ବୀରବର ବୋଲେ ସେ ଶୋଭା କେ କହିପାରି
ଖେଳୁ ଖେଳୁ ଭୁଷା ରଙ୍ଗମୟ ଦିଶେ ବଜାଇଣ ଶଙ୍ଖଭେରି । ୫ ।



## ଶ୍ରୀ କୃଷ୍ଣଙ୍କ ଚାଟୁକ୍ତି

କୁନ୍ଦରଦନା ରେ, ତୋର ସ୍ନେହ ପରିମାଣ
ଏବେ ଦେଖିକରି ଧନ ପୋଡ଼ିଲୁ ବଦନ । ପଦ ।
ନାହିଁ ମୋର ଦୋଷ ଶୁଣ ନାରାୟଣ
କାହିଁକି ଆଜ ବିମନା
ତୋହର ମୋହର ପ୍ରୀତି ଦେଖି କନା
ସହୁ କଉଁ ଅର୍ଜନା
ମିଛ ଶୁଣି କରି ଆରେ ହେମ ଗୋରୀ
ତହିଁରେ ଭୁଲିଲୁ ନବୀନା
ବିନା କେହୁ ନାହିଁ ମୋର
ତୋ ବିହନେ ସିନା । ୧ ।

ବନକୁ ଗଲେ ବତ୍ସା ଘେନିଣ
ଦିଶେ ତୋ ଚନ୍ଦ୍ର ଆନନ,
ଛନ ଛନ ମନ ହୁଅଇ ତ ପୁଣ
ନ ରହଇ ତ କାନନ ।
ଆନ ନ ଧର ମାନ ମନରେ
ତୁ ତ ବିବେକୀ ରତନ,
ଅକାରଣେ ମଣ୍ଡି ଚଇବାର
ଅକାରଣ । ୨ ।
ଏ ବ୍ରଜ ନଗରେ ଯେତେ ଚତୁର କେ
ତୋତେ ଅଛୁ ସମାନ
ସବୁର ଉପରେ ଶିରୋଭୂଷା ତୁ
ଆରେ ରମଣୀରତନ
କେତକୀବରନା ପିକବଚନା
ଜଣା ନ ଥିଲି ଏ ମାନ
ବିବେକୀ ହୋଇ ଅବିବେକୀ ହେବା
କାରଣ । ୩ ।
ବୃଷଭାନୁର ନନ୍ଦନୀ ତୁ
ମୋ ଜୀବ ଜୀବନ
ବିଧି ଘଟଣ କରିଛି ପୁଣ
କେହୁ କରିବ ତା ଭିନ୍ନ
ଅନ୍ତର ଚତ୍ତେ ନ ଧର ଧରୁଅଛୁ
ତୋ କର ଚରଣ
ମାର ମାରଣକୁ ତୁ କାରଣ
ମୋର ଜାଣ । ୪ ।
ଶୁଣି କହ୍ନଣ ନବୀନ କିଶୋର
ବୋଧିଲେ ଗଜଗମନା
ମନ୍ଦେ ହସି ବାଳୀ କୃଷ୍ଣ କୋଳେ ମେଳି
ରଚିଲେ କେଳି ଭାବନା
ନାନା ବିନୋଦ ଚଉଷଠୀ ବନ୍ଧେ
ପୂରିଲି ମନକାମନା
ଭଣେ ସୋମନାଥ ରାଜା
ଶାରଦର ସିନା । ୫ ।



## ଦୂତୀ ପ୍ରତି ଶ୍ରୀକୃଷ୍ଣ

( ପୂର୍ବ ରାଗ )

କହନ୍ତି ଶ୍ରୀକୃଷ୍ଣ ଦୂତୀ ଆଗରେ
ଦେଖିଲି ବନ୍ଧୁଙ୍କ ଗୋପ ନଗରେ । ପଦ ।
* କଳାକର-ମୁଖୀ ଧନ ଧୀରେ କରନ୍ତେ ଗମନ
ମଣ୍ଡୁଥିଲା ମହା ଅନୁରାଗରେ । ୧ ।
ଚରଣ ନୂପୁର ବେନ ସୁସ୍ୱରେ ବାଜନ୍ତେ ପୁଣି
ନେଲା କିଣି ମୋ ମାନସ ରାଗରେ । ୨ ।
କ୍ଷୀଣ କଟୀ ପୀନ ସ୍ତନା ପଛ ବା ମନମୋହନା
ବନ୍ଧୁଲି ଓଷ୍ଠ ଉପମା ନାହିଁ ରେ । ୩ ।
ଡେରଛ ନୟନେ ଚାହିଁ ଦେଲା ମୋତେ ପ୍ରାଣସହି
ପଡ଼ିଗଲି ମୁହିଁ ମାର ଭାଗରେ । ୪ ।
ସୋମନାଥ ରାଜ ଭଣି ସଖୀ ବୋଲେ ବେଣୁପାଣି
ଧୀର ହୁଅ ଭେଟାଇବି ନାଗରେ । ୫ ।

●

## ବରରଙ୍ଗିଣୀ ଶ୍ରୀରାଧା

ଭାଗ୍ୟେ ଥିଲେ ସ୍ୱାମୀ ସଙ୍ଗ ହୋଇବ । ପଦ ।
ଚାହିଁଦେଲି ତୋଳେ ପଡ଼ିଗଲି ଭୋଳେ
ତା ଶୋଭା ସୁନ୍ଦର କାହିଁ ନୋହିବ । ୧ ।
ଯାଉଅଛୁ ତନୁ ନ ଯାଏ ମୋ ମନୁ
ସେ ବଙ୍କିମା ଠାଣି କଣେ ଜାଣିବ । ୨ ।
ସହିତ ନୁହଇ ମଦନ ବାନ୍ଧଇ
ଉର ଜାନୁ କମ୍ପିବାର ରଚିବ । ୩ ।
କରଛୁ ଭରସା ଚାତକର ଆଶା
ଅଙ୍କେ ଧର ବଞ୍ଚାଇବ ମୋ ଜୀବ । ୪ ।
ସୋମନାଥ ନୃପ ଭାଷେ ରାଧା ତାପ
ନ କର ଅବଶ୍ୟ ତାଙ୍କୁ ପାଇବ । ୫ ।

●

---

* କଳାକର — ଚନ୍ଦ୍ର ।

Digitized by srujanika@gmail.com

## ସଖୀ ପ୍ରତି ଶ୍ରୀରାଧା

ବରଜବରଜ ଆସୁ ବାରତାକୁ ଯା'ରେ । ଘୋଷା ।

ବଡ଼ ପରମାଦ ଶ୍ୟାମ ଦେଖି ଛରଜାରେ
ବଳଇ କଣ୍ଟୁ ବଚନ ଆସୁ ତାକୁ ଯାରେ । ୧ ।
ବରହୀ କ ଅଛେ କାଳ ଧଇର୍ଯ୍ୟ ହଜାରେ
ବଝି ନୋହେ କେବେ ଆଉ ଚଉକୁ ମଜାରେ । ୨ ।
ବଷମ କପଟୀ ସେହୁ ମାନନୀ ଭଜାରେ
ବାଇ ପର ବାସ୍ତେ ବଂଶୀ ଗରବ ହଜାରେ । ୩ ।
ବାସରୁ ନ ଯାଏ ଡର ଦେଖି ବସେ ଯାରେ
ବୁଲୁଥାଇ କୁଞ୍ଜବନେ ସେ ନାସ୍ତି ଖୋଜାରେ । ୪ ।
ବୋଲେ ସୋମନାଥ ବୀରବର ସେ ଯାରେ
ବସ୍ମର ନ କର ରାଧେ ସେ ନାମ ମଜାରେ । ୫ ।



## ସଖୀ ପ୍ରତି ଶ୍ରୀରାଧା

( ରାଗ — ଦେଶାକ୍ଷ )

ବ୍ରଜରାଜସୁତ ବଂଶୀସ୍ୱନରେ ମୁଁ ବୁଡ଼ିଲି । ପଦ ।

ଏକା ମୋର ନାମ ଧରି, ଡାକେ ଆସ ସହଚରୀ
ଶୁଣି ମୋ ହୃଦ କଉରୀ, ଲଜ୍ଜାଭାବ ଗ୍ଲାଡ଼ିଲି । ୧ ।
ଶାଶୁ ନଣନ୍ଦ ଭର୍ତ୍ସନା ନ ମାନି ମୋ ଚଉ ବଣା—
ହୋଇ ତା'ଠାରେ ଫୁଲଣା, ଅଧିକେ ତ ଦଉଡ଼ିଲି । ୨ ।
ତେଜି ମୋର ପଥ ସୁତ ଘରେ ନ ରହଇ ଚଉ
କ କରିବ ବୁଦ୍ଧି ମିତ, ମୋହନେ ଯା ପଡ଼ିଲି । ୩ ।
କେତେ ଅଛନ୍ତି ନାଗରୀ ମୋତେ କଲା ଏତେ ସରି
ନୁହଇ ମୁଁ ତା ବଇରି, କ କରିବ, ବୁଡ଼ିଲି । ୪ ।
ସୋମନାଥ ନର ଇନ୍ଦ୍ର ମହୀପତି କୁଳ ଚନ୍ଦ୍ର
ଭୃସନ୍ତି ପ୍ରୀତି ଗୋବିନ୍ଦ— ଠାରୁ ତ ନ ଏଡ଼ିଲି । ୫ ।



Digitized by srujanika@gmail.com

## ଶ୍ରୀରାଧାଙ୍କ ଶ୍ୟାମପ୍ରୀତି ସ୍ମରଣ

ମନେ ପଡ଼ୁଛି ଶ୍ୟାମ ପୀରତି ଗୋ । ପଦ ।

କଣ୍ଠଦନ୍ତ ପଲଙ୍କେ ବସାଇଥାଏ ଅଙ୍କେ
ଖସାଇ ଦିଏ ବାସ ଝଟିତି ଗୋ । ୧ ।
କର୍ପୂରେ ଯେ ଥାଏ ଅଙ୍ଗ ଦେଶ ଭୂଷଣ ଭଙ୍ଗ
କରଇ କେତେ ରଙ୍ଗେ ସୁରତି ଗୋ । ୨ ।
ଜାଣଇ କାମରଣ ଭଲ ସେ ନବଘନ
କେବେ ନୁହଇ ମନ ଧୀରତି ଗୋ । ୩ ।
ଚୁମ୍ବନ ଦିଏ ଧୀରେ ଭିଡ଼ୁ ଯେ ଥାଏ ଉରେ
ଲବେ ଉର ପକାଏ କରତି ଗୋ । ୪ ।
ସୋମନାଥ ନରେଶ ଭାବେ ନୁହ ବିରସ
ରଖିତ ଅଛ ତୁମ୍ଭେ କୀରତି ଗୋ । ୫ ।



## ଶ୍ରୀରାଧା ବିରହ ସ୍ମରଣେ ଶ୍ରୀକୃଷ୍ଣ

ଗଜଗମନା ରେ, ମୋ ସଙ୍ଗ ବିନା ରେ, ଜୀବବନ୍ଧୁ । ପଦ ।

ଖେଳୁଥିବ ସେବକୀ ସଙ୍ଗତେ କହିଯାଇ ରହିଲେ ସେ କେତେ
ଦିନକୁ ଦିନ ମଦନ ଘାତେ ସଢ଼ି ଯାଉଛି ମୁଁ ଆଇ ସ୍ନେଥେ । ୧ ।

ଶୁଖାଇଥିବ ଚନ୍ଦ୍ରମା ମୁଖ ବେଶ ଭୂଷଣ ମଣିବ ଦୁଃଖ
ସୁଖ ଯେତେକ ହେବ ବିମୁଖ ନ ଥିବାରୁ ମୁହିଁ ତାହା ପାଖ । ୨ ।

ମହୀ ଚରିବାରେ ହେବନ କଷ୍ଟ ଅଶୋଷି ଦଶୁଥିବ ତା ବିମ୍ବ ଓଷ୍ଠ
ବିସ୍ମରିବ ମାର ଅଟଇ ଦୁଷ୍ଟ ମୋଠାରେ କାନ୍ତ ବୁଦ୍ଧି କଲେ ନଷ୍ଟ ।୩।

ମୀନକେତନ ବିନ୍ଧୁଥିବ ବାଣ ମଧୁ ଦେଶେ ରହି ବ୍ରଜବିହାରୀ
ରାଧା ବିରହ ବିସ୍ମରନ୍ତି ହରି ସୋମନାଥ ସିଂହ ରାଜା ବିସ୍ମରି ।୪।



Digitized by srujanika@gmail.com

## ସଖୀ ଉକ୍ତି

ଭଲେ ରସିଲ, ରାଧିକେ ମୋହନେ ମାତିଲ । ପଦ ।

ପକାଇ ପଛକୁ ଲାଜ　　ନ ରଖିଲ ଧଇର୍ଯ୍ୟ
ଭଲ ମନ୍ଦ କରି ଜାଣେ　　ନନ୍ଦ ରାଜା ତନୁଜ । ୧ ।
ଯେତେ କଥା କହିଲେ　　ନ ମାନେ କାହାର ବଚନ
ନବୀନ କିଶୋର ପ୍ରେମ　　କରିଅଛୁ ବନ୍ଧନ । ୨ ।
ସେ ରସିକ ଶିରୋମଣି　　ଏ ରସିକା ଯୁବତୀ
ଏକାନ୍ତ କରିଣ ଦେଲ　　ବାଂଶରି ସ୍ୱନେ ରତି । ୩ ।
ଆମ୍ଭର ନାହିଁ କଲେ କାହିଁ　　ଘେନବ ଗୋ ମିତଣୀ
ବୃଷଭାନୁ ନନ୍ଦନୀ ହୋଇଲଣି　　ଶ୍ୟାମର ଘରଣୀ । ୪ ।
ସୋମନାଥ * ମହୀନାଥ　　ନୃପମଣି ବଗ୍ମର
ସେ ବେନି ଯୁଗଲ ପ୍ରୀତି　　ଭିନ୍ନ କେ କରିପାରି । ୫ ।

●

## ଶ୍ରୀକୃଷ୍ଣଙ୍କ ଉକ୍ତି

ରହିଲି ରେ ମୋହର ମାନସ　　ଯା'ଇ ତୋହର ଲାଳସ
ଏବେ ତ କମ୍ପା କରିଣ　　ରସରଙ୍ଗିଣୀ ତୁ ଆସ । ପଦ ।
ବସ କୋଳେ ରସବତୀ　　ଜାଣ ଯାଉ ମୋର ଖ୍ୟାତି
କରି ଶ୍ରୁ ପୂରୁବ ରୀତି　　ଗଜଗତି ମୋତିଦନ୍ତୀ । ୧ ।
ନୂଆ ବସନା ନାଗରୀ　　ଶିଖିପାଙ୍ଗୀ ସୁକୁମାରୀ
ହେଉଛୁ ତନୁ କଉରୀ　　ଦେଖି ତୋ ଛବି ଗୁରୁରୀ । ୨ ।
ବଗ୍ମର କର ଚଉଁରେ　　ସୁମନ ଧର ହୃଦରେ
ଅଧରୁ ଅମୀୟ ଥରେ　　ଚଖାଇ ନଶାଅ ସ୍ମରେ । ୩ ।
ଅଙ୍ଗ ଥରୁଅଛୁ ଦେଖ　　ଭୁଜେ ବାନ୍ଧ ବେଗେ ରଖ
ନୋହିଲେ ହେଲ ନିରେଖ　　ଧନ ଥାଉ ଥାଉ ପାଖ । ୪ ।
ଘନଶ୍ୟାମ ବାଣୀ ଶୁଣି　　ମନ୍ଦେ ହସି ଅଙ୍କେ ଆଣି
ସୋମନାଥ ନୃପ ଭଣି　　ଖେପନ୍ତ ଏ ରସେ ପୁଣି । ୫ ।

●

* ମହୀନାଥ — ରାଜା ।

# ପ୍ରଣୟବହ୍ୱଳ ଶ୍ରୀକୃଷ୍ଣ

ଏତେ ଦିନେ ମୋ ଭାଗ୍ୟ ହୋଇଲା
ଚନ୍ଦ୍ରବଦନା ଅଳପ ହସି କରି
ଅପାଙ୍ଗରେ ଯାହା ଗ୍ଣହିଲା । ପଦ ।

ଫୁଲାଇ ପ୍ରଫୁଲ୍ଲ ନାସାକୁ ରସିକା
ଲପନ ତଳକୁ ପୋଚିଲା
ମହାମଣ୍ଡନା ମହୀକ ମଣ୍ଡି ଦେଲା
ପରସ୍ତେ ତ ମୋତେ ଦର୍ଶିଲା ଗୋ । ୧ ।

ବେଣୀ ପାରି ଚୁରିଅନା କୁସୁମରେ
ପିଠିକି ଓହ୍ଲାଇଥିଲା,
କେତକୀଙ୍କର ତଥି ଉପରେ ଥିବାରୁ
ସେ ଯୁବାଜନକୁ ମୋହିଲା । ୨ ।

ପିନ୍ଧିବାରୁ ସରୁ ନୀଳ ଝିନବାସ
ଫୁଟି ତା ଅଙ୍ଗ ପ୍ରକାଶିଲା
ଜାମ୍ବୁନଦ ହେମ ରସାଣିଲା ପରି
କି ଶୋଭା ହୋଇ ବିରାଜିଲା । ୩ ।

ପୁଂଥୁଲି ଉରଜେ ପଦାବଳି ସେତୁ
କେତେ ବର୍ଣ୍ଣେ ଲିହିଥିଲା,
※ ପିନାକଧର ପ୍ରିୟା ଯାନ କଟୀକି
ବନ୍ଧୁ କଟୀ ଖିନ୍ନ ଗଢ଼ିଲା ରେ । ୪ ।

ନବଘନ ଶ୍ୟାମ ବୋଲନ୍ତୁ ରାଧିକା
ପରି କାହିଁ ମୋତେ ନୋହିଲା
ଭାଷେ ସୋମନାଥ ସିଂହ ନୃପବର
ନେତ୍ରେ ନେତ୍ର ଲାଗି ରହିଲା । ୫ ।



※ ପିନାକଧର ପ୍ରିୟା ଯାନ—ସିଂହ ।

Digitized by srujanika@gmail.com

## ଶ୍ରୀକୃଷ୍ଣଙ୍କ ଚାଟୂକ୍ତି

ରୁହିଁଦେଇ ନେଉ ନାହୁଁ କାହିଁକି ତୁ ମୋତେ ଗୋ । ପଦ ।

ଶରଦ ବିଧୁ ବଦନ ତୋ ହାସ ମନମୋହନ
ଶିଖାଇଛୁ କେ ବିମନା ତୋତେ । ୧ ।

ଏକା ନ ଯା ଗଜଗତି ଦେଖିଲେ ଭଳିବେ ଯତି
ଉଚ ଉରଜ ଢାଙ୍କିବୁ କେତେ । ୨ ।

ହେମଗୋରୀ କୁନ୍ଦଦନ୍ତୀ ଯେନ ମୋହର ବନତି
ତୋ ପରି କେ ନାହିଁ ନା ଜଗତେ । ୩ ।

ସୋମନାଥ ରାଜା ଭଣି ଶୁଣି ରାଧା କୃଷ୍ଣ ବାଣୀ
ମନେ ମନେ ହସି ମଥା ପୋତେ । ୪ ।



## ପ୍ରୀତି-ପ୍ରସ୍ତାବ

( ସଖୀ ପ୍ରତି ଶ୍ରୀରାଧା )

ନ ଜାଣି ଯାହା ଗଲି ମୁଁ ହୁଡ଼ି
ତା ନେତ୍ର ବଡ଼ଶୀ ନ ଦେଲା ଛାଡ଼ି । ପଦ ।

ନ ଫିଟାଇ ଟାଣେ ପ୍ରେମ ଦଉଡ଼ି
ଅଧିକେ ତନୁକୁ ଦେଉଛି ଭିଡ଼ି । ୧ ।

ଯେତେ ଉପାୟରେ ନୋହିଲା ଫେଡ଼ି
ଅଧିକେ ତା କଣ୍ଟା ରହିଲା ଜଡ଼ି । ୨ ।

ଥୟରେ ରହିଲେ ମଦନ ଫେଡ଼ି
ଯାଉଥାଏ ପ୍ରାଣ ଅଧିକେ ଛାଡ଼ି । ୩ ।

ସେ ମୁରଲୀ ଲାଗି ମୁଁ ଗଲି ସଡ଼ି
ଘରେ ରହିଲେ ଦଅଇ ଘଉଡ଼ି । ୪ ।

ସୋମନାଥ-ରାଜା ଏ ଗୀତେ ଯୋଡ଼ି
ସମସ୍ତଙ୍କ ଘରୁ ଦଅଇ କାଢ଼ି । ୫ ।



## ମୁରଲୀ-ପ୍ରଭାବ

(ସଖୀ ପ୍ରତି ରାଧା)

ନନ୍ଦ ପୁଅ ତ ଭଲ ମୋହିଲା
ଘର ବାହାରେ ରହି ନୋହିଲା
ବଂଶୀ ଗୋଟିଏ ସେ କାହୁଁ ପାଇଲା । ପଦ ।

ବସିଥାଇ ସେହୁ ନୀପ ମୂଳରେ
ଆସ ଆସ ବୋଲି ଡାକେ ସଧୀରେ
ଅଧରେ ଦେଇଣ ମଧୁରେ ବାଇଣ
ଶବ୍ଦେ ହୃଦ ଦହିଲା । ୧ ।

କର୍ଣ୍ଣେ ଉରଜ ଜାନୁ ରମ୍ଭା ପରି
ଆବୃତ୍ତ ନ ରଖି ଦିଏ ମୁରଲୀ
ପତିକି ଛଡ଼ାଇ ଲାଜକୁ ଫେଡ଼ାଇ
ତା'ଠାରେ ଚିତ୍ତ ରହିଲା । ୨ ।

ଦମ୍ଭ କଲେ କେବେ ନ ରହେ ମତି
ତାର ରୂପ ନେନେ ନାଚଇ ନତି
ଯେ ଯେତେ ଦିଅଇ ଅପକୀରତି
ନ ମାନି ମନ ଜଡ଼ିଲା । ୩ ।

ଆହୁରି କଥାଏ ଶୁଣ ସଜନୀ,
ଅଧିକେ ମଦନ ବାନ୍ଧଇ ଟାଣି
ଭଣେ ସୋମନାଥ ଅନୁକୂଳ ନାଥ
ସେ ପ୍ରୀତି ଛାଡ଼ି ନୋହିଲା । ୪ ।



## ଶ୍ରୀକୃଷ୍ଣଚନ୍ଦ୍ରଙ୍କ ବିରହାନୁଚିନ୍ତା

ଛାଡ଼ି ଅଇଲି ଯାହା କରୀଗମନା
ଝୁରୁଥିବ ବସି ମୀନନୟନା ରେ । ପଦ ।

ଭୁଲିବ ନି ମୋ ବିନା ବିଧୁବଦନା
ହେବନି କ୍ଷୀଣ ବନ୍ଧୁ କୁନ୍ଦରଦନା ରେ । ୧ ।

Digitized by srujanika@gmail.com

ଅଞ୍ଜନ ନ ଲଦ୍ଧବ ନେତ୍ରରେ ଶ୍ୟାମା
ଦୂର କରିବ ନାନା ବେଶ ନବୀନା ରେ । ୨ ।

କୁଚରେ ପତ୍ରାବଳୀ ନ ଲେଖି ସିନା
ତୁଚ୍ଛା ହେବନ ତାର କୋପ ନକ ନା ରେ । ୩ ।

ସୋମନାଥ ନୃପତ୍ତ କର ଭାବନା
ଭାଷନ୍ତ କୃଷ୍ଣଚନ୍ଦ୍ର ବିରହେ ସିନା ରେ । ୪ ।



## ଶ୍ରୀରାଧା ଉକ୍ତି (ଛ-ଠ)

ମାରୁଆ ଗୃହିଁଲ ସେ
ଗୃହିଁ ମୋ ମନକୁ ମୋହିଲ ସେ । ଘୋଷା ।

ଛଇଲ ବର ନାଗର
ଛନ୍ନ କଲ ଏତେ ଦୂର
ଛଟକେ କଲ ବାହାର । ୧ ।
ଯହିଁକ କରଇ ହଟ
ଜଗିଥାଏ ଜଳଘାଟ
ଜବାଧରେ କରେ ହଟ । ୨ ।
ଝଟକେ ପକାଏ ମୋହେ
ଝଡ଼ଇ ଦେହ ତା ସ୍ନେହେ
ଝର ନୀର ନେତ୍ର ବହେ । ୩ ।
ନବ ଅନୁରାଗ ସନ୍ଧ
ନବେ ଘରେ ନୋହେ କନ୍ଧ
ନ ଦିଶେ ତା ବିନା କେନ୍ଧ । ୪ ।
ଟଳି ବିବେକ ହୁଡ଼ଇ
ଟଳି ନୋହେ ସ୍ନେହ ସନ୍ଧ
ଟଙ୍କଧର ପଦ ରନ୍ଧ । ୫ ।
ଠକ ରସାଇଲ ପାଶେ
ଠକ ବୁଦ୍ଧି କେତେ ଦିଶେ
ଠିକେ ବୀରବର ଭାଷେ । ୬ ।



Digitized by srujanika@gmail.com

## ନାୟକ କୃଷ୍ଣଙ୍କ ଚିଠି

ବନ୍ଧୁ ନବୀନା ଶୁହାଁ ରେ ପିକବଚନା
ଖସିଗଲି ମୁଁ ତୋ ବିନା ଘେନ ରେ ରସପ୍ରବୀଣା ( ଘୋଷା )

ବାଢ଼ିଲା ଅନଙ୍ଗ — କମ୍ପୁଅଛି ଅଙ୍ଗ
ଅଙ୍ଗୀକାର କର — ହେଲିଟି ବିଭଙ୍ଗ
ପାଇଲେ ତୋ ସଙ୍ଗ — ରହିବ ମୋ ଅଙ୍ଗ
ଅନ୍ୟ ଗତି ନାହିଁ — ଗଜଗମନା ରେ । ୧ ।



## ପ୍ରୀତି-ବେଦନା

( ସଖୀ ପ୍ରତି ଶ୍ରୀରାଧା )

( ବ-ଯମକ )

ବଞ୍ଚିବି କେମନ୍ତେ ରେ,
ଯେବେ ବିସ୍ମର ତୋ ମନେ । ଘୋଷା ।

ବନମାଳୀ ମୋତେ ସହି — ବାସରେ ନ ଦେଲା ରହି
ବସି ଝୁରୁଥାଇ ମନେ । ୧ ।

ବାଳୁତ ବୟସ ତା'ର — ବିରହେ କରେ କାତର
ବାସ କରି ରହିଲା ନୟନେ । ୨ ।

ବିବେକ ପଣକୁ ସହି — ବାଉଳ କଲା ଏ ଦେହି
ବରତ ରଖି ନୁହଇ ଜାଣେ । ୩ ।

ବିଷମ ହୁଅଇ ତନୁ — ବିସୋର ନୁହଇ ମନୁ
ବଂଶୀ ଡାକୁଥାଇ ଆସ ବନେ । ୪ ।

ବୋଲେ ସୋମନାଥ ନୃପ — ବରଜ କିଶୋରୀ ତାପ
ବୁଡ଼ାଉଅଛି କୁଳ ଏତେ ଦିନେ । ୫ ।



Digitized by srujanika@gmail.com

## ଅକ୍ରୂରଙ୍କୁ ଦେଖି ଗୋପୀ-ବେଦନା

ଏ କି ସଜ ଦେବରାଜ, ଦୂତ ଘେନଣ ସଙ୍ଗର ହେ । ଘୋଷା ।

ହେଉଅଛ ତର ତର ଛବି ତ ଭିନ୍ନ ପ୍ରକାର
ତେଜିବ କି ଏବେ ଗୋପ ବନିତା
ବୋଲି ଆମ୍ଭଙ୍କୁ ଲଗୁଅଛୁ ଚିନ୍ତା
ଏ କି ଉଚିତ ହେ ଜଗଜ୍ଜିତା କେ ଦେଲା ଯନ୍ତ୍ରର ହେ । ୧ ।

ଷଣେ ହେଉଥିଲେ ଭିନ୍ନ ଉଡ଼ି ଯାଉଥାଏ ଜ୍ଞାନ
ଦହୁଅଛୁ ଘେନିବ କି ପ୍ରାଣ
ବିଚାର ମାନୁଛୁ ହେ ଶ୍ୟାମଘନ
ଶୁଣା ତ ନ ଥିଲା କାଳେ ଏ ମାନ କହିବୁ କାହାରେ ହେ । ୨ ।

ନାଗରୀ ନାଶ ନ କର ଛାଡ଼ ମନୁ ଏ ବିଗ୍ରର
ନିଷ୍ଠୁର ହୃଦୟକୁ ଧରିବାର ଛାଡ଼ ଛାଡ଼ ଏଣୁ ଯାଉ ଯେ ଦୂର
ବୋଲୁଅଛ ନାଗରଙ୍କ ବର ଘେନ ଘେନ ବାରେ ହେ । ୩ ।

ସବୁ ରୂପେ କରି ଆଶ ହେଉଥାଉ ରାତ୍ରୀ ଶେଷ
ନିରାଶ ନ ଜାଣି କରି ବିଶ୍ୱାସ ଯେସନେ ଗୃତକ ଘନକୁ ଆଶ
ଏବେ ଜଣାଗଲା ତୁମ ନିରାଶ ବଞ୍ଚିବୁ କାହାରେ ହେ । ୪ ।

ନ ଯାଅ ଆମ୍ଭ ଶପଥ, କହୁଅଛୁ ପଦ୍ମନେତ୍ର
ଗଳେ ଦେଇଯାଅ ଚୋକାଇ ବିଷ ଯଦି ଏଥିରେ ଅଛୁ ମୌରୁଷ
ଭଣେ ସୋମନାଥ ସିଂହ ନରେଶ ଶୁଣୁ ନାହିଁ କର୍ଣ୍ଣରେ ହେ । ୫ ।



## ବିରହପୀଡ଼ିତା ଶ୍ରୀରାଧା

କି କଲି ସଖି ହୁଡ଼ିଲି, ଏବେ ମୋହନ ଛବିକି ଭୁଲିଗଲି । ଘୋଷା ।

ନଟ ଲଗାଇ ହାଟ କଲା ନିରତେ
ଘାଟ ମାଗଇ ଯହିଁ ଦେଖିଲେ ମୋତେ
ସହି ନୋହେ ତାର ଯେତେ
ନାଗର ସାଗରେ ନିରତେ ବୁଡ଼ିଲି । ୧ ।

Digitized by srujanika@gmail.com

କାହୁଁ ଶିଖିଲ ଯୁବତୀ ମୋହିବାର
ଆସ୍ୱାଦ ନ କରେ କୁଳବତୀ ଜକର ।
କୁଳରୁ ଛଡ଼ାଇଲ ଯହୁଁ
ଫେଡ଼ାଇ ତା' ପ୍ରେମେ ଅଧିକେ ଜଡ଼ିଲ । ୨ ।
ପଲ୍ଲବ ଉଚତ ମୁଖକୁ ଗୁହିଁଲେ
ଆସିବାକୁ ପାଦ ନ ଚଳଇ ଭଲେ
ଅସ୍ଥିର ହୁଅଇ ତନୁ କମ୍ପ ଥାଇ
ଅତନୁ ଶରରେ ପଡ଼ିଗଲ । ୩ ।
କହି ନୁହଇ ବଚନ ତାହା ଆଗେ
ଭେଳକ ଲଗାଉଥାଏ ନେତ୍ରଯୁଗେ
କେତେ ସବ୍ଗରେ ରଖଇ ସଙ୍ଗରେ
ଆସ୍ୱାଦ ନ ରଖି ପଡ଼ଗଲ । ୪ ।
ଅନକୁଳ ମଣ୍ଡନ ନରପତ
କାଦମ୍ବ ବଂଶ ଉଦୟ ଚକ୍ରବର୍ତ୍ତୀ
ଶ୍ରୀ ବୀର ନୃପସିଂହ ବଦତ
ସଖୀ ବୋଲେ ଏହା ହୁଡ଼ିଲ । ୫ ।

●

## ଶ୍ରୀକୃଷ୍ଣଙ୍କ ଉକ୍ତି

ଆସ ଆସ ମୋର ପାଶେ, ରସେ ରସାଇବ ତୋତେ (ଘୋଷା)
ଚହ୍ନିବୁ ସୁରତ ଭାବେ ମାଡବୁ ରସରେ ଯେବେ
ଛାଡ଼ିବୁ ନାହିଁ ତୁ କେବେ ଜୀବ ଥିବାଯାଏ ସତେ । ୧ ।
କରୁଏ କେତେ ଯେ ମୋହ ବଢ଼ାଇ ଦିଅଇ ସ୍ନେହ
ଯାହା ହେଉଥାଇ ଦେହ କହିବି ମୁଁ ଆଉ କେତେ । ୨ ।
ମୂରୁଛି ନୁହଇ ଯାହା କହୁଅଛି ଯେନ ତାହା
କରବ ଆଗକୁ ସାହା ଭୟ ନ ରହିବ ଚତ୍ତେ । ୩ ।
ନୋହଇ ତ ଏ ଅସାର ସାର ପୀରତକୁ କର
କରଲେ ନ ଥିବ ଡର କୀରତ ଥିବ ନରତେ । ୪ ।
ଶୁଣି ଶ୍ୟାମଘନ ବାଣୀ ହସିଲ ରମଣୀମଣି
ସୋମନାଥ ନୃପ ଭଣି ଭାଷିଲେ ମଜ୍ଜାଏ ଯେତେ । ୫ ।

●

Digitized by srujanika@gmail.com

## ଶ୍ରୀକୃଷ୍ଣଙ୍କ ଉକ୍ତି

ଏ କି ରଙ୍ଗ ଜୀବସଙ୍ଗୀ ମୋହର ଜୀବଜୀବନ । ପଦ ।

କରୁଣା ଊଣା          କରିବୁ ବୋଲି ଜଣ
ନ ଥିଲା ମୋହର ମନ
ଆରେ ବିମ୍ବଓଷ୍ଠୀ          ଅଳପ ହସିଣ
ଦେଖାଅ ଚନ୍ଦ୍ରବଦନ । ୧ ।

ପୀରତି ଲେକକୁ          ଅନ୍ତର କରି କି
ଏହା କାହିଁଅଛୁ ଜାଣ
ନବୀନା ନାଗରୀ          ରସିକଜନ ନାରୀ
ରସ ବରଷାଅ ପୁଣ । ୨ ।

ମାରି ପକାଇବୁ          ଯେବେ ମାର ହାତେ
କା'କୁ ଏ କଥା ଦୂଷଣ
ରସମଣ୍ଡନା ରେ          ଦଶାକୁ ନ ଦିଅ
ଗୃହୀଁ ରମଣୀରତନ । ୩ ।

ବିନା ଦୋଷରେ ତୁ          କରୁଛୁ ଝଗଣ
ରସବତୀ ପ୍ରାଣଧନ
ଗଜଗତି କେବେ          ନ ଧର ଏ ରୀତି
ଉଡ଼ି ଯାଉଅଛୁ ଜ୍ଞାନ । ୪ ।

ଶୁଣିଣ ରମଣୀ          ନଟବର ବାଣୀ
ହସି କଲା ଆଲିଙ୍ଗନ
ଭଣେ ସୋମନାଥ          ବୀରବର ସିଂହ
ରସିଗଲା ବନ୍ଧୁ ମନ । ୫ ।



Digitized by srujanika@gmail.com

## ଶ୍ରୀରାଧାଙ୍କ ଉକ୍ତି

ପ୍ରୀତି ଲଗି ମୋହନ ଯନ୍ତ୍ରର କଲି ଗୋ

(✻) ବାସେ ରହି ନୁହଇ ବିଷମ ହୋଇଲି ଗୋ । ୦ ।

(✢) ବସୋର ନ ଯାଏ ମନୁ କି ମନ୍ତ୍ର ଜାଣଇ କାହ୍ନୁ
ବଜାଏ ମୋହନ ବେଣୁ ପଗଣ ନେଲି ଗୋ । ୧ ।

ପଡ଼ିଲି କପଣ ମାଡ଼ି ଅନଙ୍ଗ ଦହଇ ଧାଡ଼ି
ଜାତି ପତି କୁଳ ଏଡ଼ି ସରମ ଗଲି ଗୋ । ୨ ।

ପାରିବ କେହ୍ନୁ ବଞ୍ଚାଇ ଜାନୁ ଯଉବନ ବହି
ମୋ ଚିତ୍ତ କେତେ ମାତର ଉତ୍ତମ ହୋଇଲି ଗୋ । ୩ ।

ଧାସୋର ନ ଯାଏ ଚିତ୍ତେ ଦଣ୍ଡୁଅଛି ନେତ୍ରପଥେ
କି କରିବ କହି ମିତେ ଉତ୍ସୁକ କଲି ଗୋ । ୪ ।

ହେଲନ ଭଗାରିହସା ଜୀବନେ ନାହିଁ ମୋ ଆଶା
ସୋମନାଥ ସିଂହ ଭାଷେ କରମେ ଥିଲି ଗୋ । ୫ ।



## ସଖୀ ପ୍ରତି ରାଧା

( ରାଗ—ବରଷା କାମୋଦୀ )

ପୀରତି ହେଲା କାଆଶା
ପୀରତି ଲଗି ମୁଁ ଗୁଡ଼ିଲି ଲାଜକୁ
ହେଉ ପଛେ ଲୋକହସା ରେ । (ଘୋଷା)

ଦେଖିଲି ବେଳରୁ ମଧୁର ମୂରତି,
ରହିଲାଣି ନେତ୍ର ଲାଖି ରେ ।
ଗୁଡ଼ି ନୋହିଲା ଯେତେ କଲି ଉପାୟ
ମାର ମାରେ ଯୋଖି ଯୋଖି, ରେ ରାମା । ୧ ।

---

✻ ବାସେ—ଗୃହରେ ।

✢ ବସୋର—ପାସୋର ।

Digitized by srujanika@gmail.com

ଚତ୍ତରେ ଘୋଷି ହେଉଛୁ ଅନୁକ୍ଷଣେ
ଆନ ବୁଦ୍ଧି ନ ସ୍ଫୁରଇ ।
ଶୟନେ ସ୍ୱପନେ ନାଗର ମୋହନ
ଛବି ହୃଦେ ନାଚୁଥାଇ, ରେ ଶ୍ୟାମା । ୨ ।

ଦୂର କରି ମୋତେ ନଷ୍ଟ ଲଗାଇଲି
ନ ଥିଲି ଏକା ହିଁ ଶୁଣା ।
ଯାହା ହେଉଅଛୁ ତନୁ ଏବେ ମୋର
ବୁଦ୍ଧି କରିଦେଲି ଦଣା, ରେ ଶ୍ୟାମା । ୩ ।

ପଲ୍ଲବୁଅଛୁ ଧନକୁ ଧନ ସ୍ନେହ
ପକାଇ ଦେଲିଣି ମୋହେ
ଜାଣି ନ ପାରିଲି କପଟ ବୁଦ୍ଧିକି
ଅକଟ କେବେ ସେ ନୁହେ, ରେ ଶ୍ୟାମା । ୪ ।

ସୋମନାଥ ବୀରବର ସିଂହ ଭଷେ
ଚତୁର୍ଥ କରେ ବିସ୍ତର
ଚତୁର ନାଗର ଶୁଶ୍ରୁଷା କରାଇ
କରିବ କୁଞ୍ଜ ବାହାର, ରେ ଶ୍ୟାମା । ୫ ।



## ଶ୍ରୀକୃଷ୍ଣଙ୍କ ଉକ୍ତି

ଧନ ମହାମଣ୍ଡନା
ଆସି ଚୁମ୍ବନ ଦିଅ ତୁ ସିନା ରେ । ପଦ ।

ନ ଶୁଖା ବିଧୁବଦନ ଉଡ଼ୁଛୁ ମୋହର ଜ୍ଞାନ
କାଲେ ତ ନ ଥିଲି ଏ ଯୋଗ୍ୟ ତୋହର,
କି ଘେନି କରିଛୁ ମାନ ରେ । ୧ ।

ନବୀନ ବୟସୀ ବାମା 'ଦୋଷ ଥିଲେ କର କ୍ଷମା
ଦାସ ଜାଣି ଗଲେ ଉଣା ଦର୍ଶିବଟି,
ତୋହ ଥାଉ ଥାଉ ଶ୍ୟାମା ରେ । ୨ ।

Digitized by srujanika@gmail.com

ସଖି କର ସନମତ         କହୁଅଛୁ ଘେନ ମିତ
ଅଙ୍କରେ ବସାଇ ସ୍ମରକୁ * ଲସାଇ
କାହିଁ ରୁହାଅ ଜଗତରେ । ୩ ।
କୃଷ୍ଣ ବାଣୀ ଶୁଣି ବାଳୀ         କୋଳେ ଧର ବନମାଳୀ
ଭଣେ ସୋମନାଥ ସାରବରଙ୍କ ଈଶ୍ୱର
ନାନା ରଙ୍ଗେ କଲେ କେଳି ରେ । ୪ ।



## ଶ୍ରୀରାଧାଙ୍କ ପ୍ରୀତ ଲକ୍ଷଣ ବର୍ଣ୍ଣନା

ନଟବର ହଟ ଲାଗି ହେଲି ବଣା
ଅଧିକେ ପ୍ରୀତ ବଢ଼ାଇ ନୁହେ ଊଣା ରେ । ଘୋଷା ।
ତନୁ ହୁଅଇ କମ୍ପିତ         ବିଷମ କରଇ ମିତ
ଗୃହିଁଦେଲା କ୍ଷଣି ତଉ ହୁଏ ବଣା ରେ । ୧ ।
ସ୍ନେହକୁ ଦିଏ ବଳାଇ         ଲାଜ ଦୂର ହୋଇଯାଇ
ମଜ୍ଜାଇ ଦିଅଇ ରଙ୍ଗେ ସେହୁ ସିନା ରେ । ୨ ।
ବିରହେ ନୁହଇ ରହି         ରହିଲେ ମାର ମାରଇ
ବଞ୍ଚିବା ଭରସା ନାହିଁ ଗଲି ଜଣା ରେ । ୩ ।
ମଜ୍ଜାଇ ଦିନକୁ ଦିନ         ନ ଭାଙ୍ଗଇ କେବେ ମନ
ଯେ ଯାହା ବୋଇଲେ ଆଉ ନୋହେ ଶୁଣା ରେ । ୪ ।
ସୋମନାଥ ସାରବର         ସିଂହ ଭୂପନ୍ତ ଏ ଗିର
ନ ଗଲି କେବେଁ ପାଶୋର ପ୍ରାଣ ଘେନା ରେ । ୫ ।



## ସଖୀ ପ୍ରତି ରାଧା

ନାଗର ମୋହନ ରୂପ ମୋହିଲା ରେ
ମୋହିଲା କ୍ଷଣି ଅତନୁ ଦହିଲା ରେ ।
ଥର ଥର କର ଦେଲା ଦେହୀ         ଝର ଝର ନେତ୍ର ନୀର ବହି
ମାର ମାରଣ ତ କହି         ନୋହିଲା ରେ । ଘୋଷା ।

* ଲସାଇ—ଦୂର କର ।

Digitized by srujanika@gmail.com

ସଦନେ ରହି ନୁହଇ ଅନୁକ୍ଷଣେ
ଚଉ ବଚଲାତ ହୁଏ ତାହା ଘେନ
ରସେ ରସିବାକୁ ଚଉ ହୁଅଇ ଅନବରତ
ନ ରଖେ ଦୃଢ ବରତ କ ହେଲା ରେ । ୧ ।

ଦମ୍ଭ ଜୀବ ବିବେକ ପାଶୋରଇ
ଅଧିକେ ଲୋଭ ଯତନେ ପଛିବାଇ,
ପାରିବ କେ ଏହା ସହି ସହିଲେ ନ ରହେ ରହି
ଆଉ କାହିଁ ଏ ତ ଦେଖା ନୋହିଲା ରେ । ୨ ।

ବିଷମ ହେଲାଣି ଦଶାର ସାଗରେ
ମୋହର ଜ୍ଞାନ ଉଡ଼ୁଛି ସନ୍ତାପରେ
ଥିଲା ଏତେ କାଳେ ଏହା କହିଲେ କମ୍ପୁଛି ହିଆ
ଆନ କେହି ନାହିଁ ସାହା କହିଲା ରେ । ୩ ।

ପରମାଦ ପୀରତିକ କରେ ଖିତ
ଏବେ ହେଲାଣି ନିକର ସେହି ଗତ
କି କରିବ କରେ ମୋହ ଥିଲେ କି ଉପାୟ କହ
ଏବେ ବଡୁତ ସନ୍ଦେହ ଲଗିଲା ରେ । ୪ ।

ଜଣାଗଲାଣି ଏଥର ବଞ୍ଚି ନୋହେ
ଜାଣ ବୁଡ଼ିବ ନିଷ୍ଟୟ ତାଙ୍କ ସ୍ନେହେ
ଏଣିକି ନାହିଁ ବିଗ୍ଭର ମୋହିଲେ ଶ୍ୟାମସୁନ୍ଦର
ସୋମନାଥ ବୀରବର ଭଷିଲା ରେ । ୫ ।

●

## ଶ୍ରୀକୃଷ୍ଣଙ୍କ ପ୍ରତି ଶ୍ରୀରାଧା

କେତେ ଛନ୍ଦରେ ଭୁଲାଉ ରେ ମୋହନା । ପଦ ।

ନଷ୍ଟେ ହେବ ଜାଣ ଜାଣ ତୋ ପ୍ରେମେ କରୁଛୁ ବଶ
ପୀରତିରତନ ରସ ବରଷା ଅନା । ୧ ।

ପ୍ରମାଦ ମୀନକେତନ ଜାଣିଲେ ବିନ୍ଧିବ ବାଣ
ନ ଲଗାଅ ଲଟଶ୍ୟାମ ତୁ ମୋନା । ୨ ।

Digitized by srujanika@gmail.com

ବଧୂମୁଖେ କହୁ ହସି            ମୋ ମନକୁ କହୁ ତୋଷି
ନ ରହେ ଆସ୍ୱାଦ ପରେ ହସାଅନା । ୩ ।
ଓଷ୍ଠୁ ହୁଏ ଥର ଥର            ଶୁଣି ବଚନ ମଧୁର
ଯାଅ ନଟବର ବେଶ ଦେଖାଅନା । ୪ ।
ସୋମନାଥ ନରେଶ୍ୱର            ଭାଷନ୍ତି ଶ୍ୟାମକୁ ବର
ଆନ ଆଉ କିଛି ଚିତ୍ତେ ବସୁରନା । ୫ ।

●

## ରାଧାଙ୍କ ନବାନୁରାଗ

ଆରେ ଆରେ ମୋର ନବୀନ ଗୋରା, ଯାଏ ଗୃହିଁ ଗୃହିଁରେ । ପଦ ।
ନେଲଣି ମୋହର କାଢ ମହତ,            ଆଉ କାହିଁ ଅଛି ଏ ମୋର ସତ ।
ନଟବର ରୂପକୁ ଅନାଇ ରେ । ୧ ।
ହୋଇଥାଏ ସେହୁ ଦ୍ରବ୍ୟ କାଛେଣି,            କରେ ଧରିଥାଏ ମୁରଲୀପାଣି ।
ଶିରଗନ୍ଧ ପିଠିକି ଲୋଟଇ ରେ । ୨ ।
କଟୀର କଙ୍କିଣୀ ବାଜଇ ଟାଣ,            ପୟର ନୂପୁର ସେ ରୁଣଝୁଣ ।
ଶୁଣି ଗୁଡ ଚମକ ପଡ଼ଇ ରେ । ୩ ।
ଜାଣଇ ସେହୁ ଯୁବତୀକ ମୋହ,            ତା' ପରି ଆଉ ଜଗତରେ କାହିଁ ।
ବିମ୍ବାଧରେ ହସ ହସ ହୋଇ ରେ । ୪ ।
ଭାଷେ ସୋମନାଥ ରାଜା ଏ ରସ,            ମୋହନେ ରାଧିକା ହୁଅନ୍ତି ତୋଷ
ଚନ୍ଦ୍ରମୁଖ ତଳକୁ ଲୁଆଇଁ ରେ । ୫ ।

●

## ବର୍ଷାକାଳରେ ସଖୀ ପ୍ରତି ବିରହିଣୀ ରାଧା

ନଇଲେ ନବକିଶୋର ଗୁଡ କଲେ ପଥର । ଘୋଷା ।

କଷ୍ଟ କଲେ ଆସିବାକୁ            ଚିତ୍ତେ ଥିଲି ନାଶିବାକୁ
ବଞ୍ଚିବା ଧରି କାହାକୁ            କି କରିବା ଗୋ ଏଥର । ୧ ।
ଦେଖ ଏ ଘନ ଧମକ            କି ଅବା କାମ ଚମକ
ଇନ୍ଦ୍ରଧନୁ ତା କାର୍ମୁକ            ଧାରା ଦଶେ କି ଶର । ୨ ।
ସାଜିଲି ଘୋର-ଜମ୍ବର            ନୀଳକଣ୍ଠ ଡାକ ଭୁର
ବୋଲୁଛି ବିରସ୍ୱାମୀର            ଶୁଣି ହୋଏ ଅଥିର । ୩ ।

Digitized by srujanika@gmail.com

ବେଲକୁ ବେଲ କୁମାର
କହି ଥିଲେ କି ବଗୁର
ଶୁଣିଣ ତାଙ୍କ ଆତୁର
ସ୍ୱପନ୍ତ ନୂହ ଆତୁର

କଲି କି ସେ ଅନ୍ଧକାର
ମରଣଟି ନକର । ୪ ।
ସୋମନାଥ ସ୍ୱାରବର
ଆଣିମି ବେଣୁଧର । ୫ ।

# ସଖୀ ପ୍ରତି ରାଧା

( ରାଗ—ସଖୋଲ୍ଲ )

ନଇଲେ ମୋର ପୁରକୁ ଗୋ ଶ୍ୟାମସୁନ୍ଦର * ଦର ମୁଁ କରନ୍ତ ଦୂର
ଦୂର ହୋଇଯାନ୍ତା ମାର, ମାରନ୍ତା କାହିଁକି ଶର, ସରସ ଅଙ୍ଗେ ମୋହର । ପଦ ।

ମଣ୍ଡିଣ ⁺ ବାସରେ ବାସ, ବାସ କୁସୁମେ ହରଷ
ରସରେ ବଳାଇ ଆଶ, ଆଶା ଭଙ୍ଗିଣ ନରାଶ
ରାସବିହାରୀ କଲେ ତ ଊଣା, ଊଣା ହୋଇବ ବୋଲି ତ ନ ଥିଲି ମୋର ଜଣା
ଜଣା ନ ଥିଲି ଖଣ୍ଡ ପଣ ତାଙ୍କର ଯେ ଶୁଣା, ଶୁଣାଥିଲେ ନ ବଳାନ୍ତ ମୋ ଚକ୍ଷୁ ନବୀନା
ବିନା ଦୋଷେ ମୋର ଅଙ୍ଗ, କାମଶରେ ହେଲି ଭଙ୍ଗ । ୧ ।

ଥୋଇଲି ମୁଁ ଶେଯ ସଜାଇ, ଜାଇ ସେବତୀ ମିଶାଇ
ସାଇତ ସୁବାସ ଖଇ, ଖୁଆଇବା ପାଇଁ ମୁହିଁ
ମୁହିଁ ଅଟେ ଅବ୍ରଗିମା ସହି, ସେହି ତ ହୀନ କରଗଲେ ଲେଶେ ଦୟା ନାହିଁ
ସହି ନୋହଇ କହି, ନ ଆସିଲେ ଯହୁଁ ସେହି
ନାହିଁ ମୋ ଦୋଷ କାହିଁ, କି ମନେ ସେ ରୋଷ ବହି
ବହି ବୁଲୁଥାନ୍ତ ବନ, ଏବେ କଲେ ହୀନମାନ । ୨ ।

କି ଘେନଲେ ତାଙ୍କ ମନ, ମନକୁ କରଣ ଆନ
ଆନଠାରେ କରି ଧ୍ୟାନ, ଧ୍ୟାନ ଯୋଗୀନ୍ଦ୍ର ଯେସନ
ଘନମତେ ରହିଲେ ସେ ପୁଣି, ପୁଣି କେମନ୍ତେ ଆସିବେ ଏବେ ମୁରଲୀପାଣି
ପାଣି ମୁଁ ଧରି କହନ୍ତ ବନସ୍ଥ ଗୃହବାଣୀ, ବାଣୀ ମୋ ଶୁଣି ରହନ୍ତେ ସେ ମୋ ପାଶରେ ପୁଣି
ପୁଣି କି ଆଉ ଦେଖନ୍ତେ ବରଜବନ୍ଧୁ, ନ ଖାନ୍ତେ ଅଧରୁ ମଧୁ । ୩ ।

* ଦର—ଭୟ, ⁺ ବାସ—ଗୃହ, ବସ୍ତ୍ର, ସୁବାସ ।

Digitized by srujanika@gmail.com

ଏତେ ଭଳି ଚରି ମସ୍ତି, ମହିଳା ମସ୍ତିକ ଗୃହିଁ
ଗୃହିଁ ସଖୀକ ସେ କହ୍ନ, କହ୍ନ ଆଣ ତୁ କହ୍ନାଇ
ନାହିଁ ହୋଇ ତୃଟ ତୁ ତାହାର, ହାର ଯାହାକୁ କରିଥିଲ ହେ ମୁରଲୀଧର
ଧରମ ହେବ ବିଜୟ କଲେ ଏବେ ତୁମ୍ଭର, ଭରମ ହୋଇକରି ବୋଲୁଅଛି
ଶ୍ରୀମାଧବର
ବରଜରାଜ ବିଜୟେ କରିବେ ଆଜ, ଭଣେ ସୋମନାଥ ରାଜ । ୪ ।



## ସଖୀ ପ୍ରତି ନବାନୁରାଗୀ ଶ୍ରୀକୃଷ୍ଣ

ଗୃହିଁଗଲା ନବୀନା ମୋତେ
ବଞ୍ଚିବି କେମନ୍ତେ ତା ବିନା ସତେ । ପଦ ।

ଭ୍ରୂଲତା କମାଣ  ନୟନ ତା ବାଣ  ବାଜିଗଲା ହୃଦଦେଶେ
ଚମକ ପଡ଼ିଲି  ଅଥୟ ହୋଇଲି  ଚନ୍ଦ୍ରମାବଦନ ହାସ ସଙ୍ଗାତେ । ୧ ।
ବକୁଳ କୁସୁମେ  ବେଣୀ ପାରିଥିଲା  କୁଟିଳ କେଶେ ଚଉରି
ଅଳାଇଚ ଫୁଲ  ଝରି ତଥିପର  ଥିବାରୁ ହୃଦ କଉରି ସଙ୍ଗାତେ । ୨ ।
ନାସାର ବସଣୀ  ଧନମଣି ଜିଣି  କପୋଳେ ସିନ୍ଦୂର ଚତା
କୁଚ ପରେ କେତେ  ଶୋଭା ଦିଶୁଥିଲା  ହାର ଯେ ଗଜମୁକୁତା ସଙ୍ଗାତେ ।୩।
ପିନ୍ଧିଥିଲା କାଛି  ନୀଳ ଝୀନବାସ  ଫୁଟି ଦିଶୁଥିଲା ତନୁ
କୁନ୍ଦନ ଯେମନ୍ତେ  ରସାଣିଲା ପର  ସେ ଶୋଭା ନ ଗଲା ମନୁ ସଙ୍ଗାତେ ।୪।
ସୋମନାଥ ସିଂହ  ବୀରବର ବୋଲେ  ମୋହନ ବିରହବାଣୀ ।
ଯେବେ ଆଣିଦେବୁ  କରି ଗମନାକୁ  କରିବି ଗଳାର ମଣି ସଙ୍ଗାତେ । ୫ ।



## ସଖୀ ପ୍ରତି ଶ୍ରୀରାଧା

(ବଂଶୀ-ପ୍ରଭାବ)

ଆରେ ପିକଭାଷି ! ଘନଶ୍ୟାମ ବଂଶୀରେ ମୁଁ ଗଲି ଭାସି । ଘୋଷା ।

ଶୁଣିଲା ବେଳରୁ ଛନ ଛନ  ହେଉଅଛି ଏବେ ମୋର ମନ
କମ୍ପୁଅଛି ତନୁ  ନ ଯାଏ ମୋ ମନୁ  କି କରିବି କହ ମଦାଳସୀ । ୧ ।

Digitized by srujanika@gmail.com

ହୃଟ ଲଗାଇଲା ଏକା ଥାଇ — କେତେ ନାଶ୍ରି ଗୋପପୁରେ ନାହିଁ
ବୃନ୍ଦାବନେ ଯାଇ — ମୁରଲୀ ବଜାଇ — ମୋର ଗୁମାନ ପକାଏ ନାଶି । ୨ ।
ଯେବେ ଚଉକୁ କରଇ ସ୍ଥିର — ଅଧିକେ ବିନ୍ଧଇ ପଞ୍ଚଶର
ମରମରେ ଦଇ — ଅଜ୍ଞାନ ହୁଅଇ — ଭାଳିଲେ ନ ସରେ ଦିବାରଜନୀ । ୩ ।
ଭଣେ ସୋମନାଥ ବୀରବର୍ — ସଖୀ କହଇ ବିରହ ଗିର
ନ ପାରଇ ସହି — ଆଉ ପଛେ ମୁହିଁ — ଏତେ ବୋଲି ମହୀ ତଳେ ବସି ।୪।



## ଅମ୍ବର ଖେଳରେ ଶ୍ରୀକୃଷ୍ଣ

ମୁଖ ଶଶୀ ଜିଣି ଲୋ ସଜନୀ । ପଦ ।
ଅମ୍ବର ଖେଳରେ ଶୋଭି ମୁରଲୀପାଣି
ସୁନ୍ଦର ଦିଶୁଛି ତାଙ୍କ ବାଙ୍କଚାହାଁଣୀ ଲୋ । ୧ ।
ଗୋପାଳଙ୍କ ମଧ୍ୟେ ନୃତ୍ୟ କରେ ସଜନୀ
ଶୁଭୁଅଛି ପାଦେ ରୁଣୁ ଝୁଣୁ କଙ୍କିଣି ଲୋ । ୨ ।
ବାଜୁଅଛି ନାନା ବାଦ୍ୟ ଶିଙ୍ଗାର ଧ୍ୱନି
ଏତେ ବଡ଼ ଦାଣ୍ଡ ରଙ୍ଗ ହୋଇଗଲାଣି
ଖେଳ ଖେଳିବାର ମନ ନ ଭାଙ୍ଗେ ପୁଣି ଲୋ । ୩ ।
ଧୂଳି ପଡ଼ିବାରେ ଶୂନ୍ୟ, ନ ଦିଶେ ପୁଣି,
ସୋମନାଥ ବୀରବର ଏ ରସେ ଭଣି ଲୋ । ୪ ।



## ନାୟିକାର ବିରହାନୁଚିନ୍ତା

ଧନ ମୋ ଚନ୍ଦ୍ରବଦନ, ତା ବିନା ନ ଦିଶଇ ଆନ । ପଦ ।
ମୋ ଜୀବନ ଅଟେ ମୀନ ତା ନୟନ ଥୋପ
ଉଚ୍ଚାଟ ନେଇ ରଖିଛି ତା ସମୀପରେ । ୧ ।
କେତେଦୂର ନିଶାକର ଜଳରେ କୁମୁଦ
ସେହିପରି ନ ଛାଡ଼ୁଛି । ୨ ।
ଯେସନ ପ୍ରକାରେ ଅଙ୍ଗ ଛାଇ ନୁହେଁ ଭିନ୍ନ,
ତେସନ ପ୍ରକାରେ ମୁଁ ଯେ ହୋଇଛି ବନ୍ଧନ ରେ । ୩ ।

Digitized by srujanika@gmail.com

ସଦାନନ୍ଦ ଗଉରୀ ଯେମନ୍ତେ ଅର୍ଦ୍ଧ ଅଙ୍ଗ,
ନୂତନ ନୁହଇଁ ଧନୁ କରିଅଛୁ ସଙ୍ଗ ରେ । ୪ ।

ସୋମନାଥ ବୀରବର ନୃପକୁଳଚନ୍ଦ୍ର
ଭାଷନ୍ତ ତ ରସିଅଛ ନ ଗୁଡ଼ ଗୋବିନ୍ଦ ରେ । ୫ ।



## କୃଷ୍ଣଙ୍କ ପ୍ରତି ରାଧା

ନଟବର, କେତେ କହୁ କହୁ ମନ ହର ମୋର ରେ । ପଦ ।

କରିଦେଲୁ ନିତ ହରବର, ଆଉ କି ଧରିଛୁ ଚନ୍ଦ୍ରେ ତୋର,
ତୋ ମନ ପୂରିଲା, ମୋତେ ଲଜ୍ଜା ହେଲା,
ଗୁଡ଼ ଗୁଡ଼ ଯିବ ମୋର ଘର ରେ । ୧ ।

ଉତ୍ତର ହେବ ବହୁତ ଦୂର, ଶୁଣୁ ଶୁଣୁ ତୋ ମଧୁର ଗିର,
ଯାଇ ନ ପାରିବ ଭର୍ତ୍ସନା ଶୁଣିବ,
ଦେଖ ବୁଲୁଛନ୍ତି ଧନକର ରେ । ୨ ।

ଏଡ଼େ ଜଞ୍ଜାଳ କାହିଁକି କର, କେତେ ନାହାନ୍ତି ଏ ଗୋପପୁର
ଏକା ମୋହ ନାମେ ହାଟ ବସାଇଲୁ
ମୁରଲୀ ବଜାଇ ନିରନ୍ତର ରେ । ୩ ।

କହୁଲେ ନ ଧେନୁ ବିମ୍ବାଧର, ପଥେ ଛକିଲୁ ଏ କି ବିଗ୍ଭର
ଏଣୁ ହେଉଚି ଯେ ଦେଖିବ ସତ,
ବୋଲିବ ଏ ନିଶ୍ଚେ ନଷ୍ଟାଚାର ରେ । ୪ ।

ଭଣେ ସୋମନାଥ ବୀରବର, ରାଧିକେ କହନ୍ତି ଯୋଡ଼ି କର
ଶୁଣିକରି ପ୍ରଭୁ ହସହସ ହୋଇ
ବୋଇଲେ ସଖି କମ୍ପାଇ ଉର ରେ । ୫ ।



Digitized by srujanika@gmail.com

## ଶ୍ରୀକୃଷ୍ଣଙ୍କ ପ୍ରତି ଗୋପୀ

ବରଜବର ଲଜ ଫେଡ଼ାଇ ଦେଲୁନ ଗୋ । ପଦ ।

ଲଗିଅଛୁ ବାଦ ବଂଶୀ ଦେଲୁ ବାଧି
ଏକା ପାଇବାର ଏ କ ବୁଦ୍ଧି ରେ । ୧ ।
ପାଉଛୁ ଅଳାଣି ନାହିଁ ଏଥି ଜାଣି
କହୁଲେ ନ ବୁଝୁ କଥା କଠ ରେ । ୨ ।
ଆମ୍ଭଙ୍କୁ ଉଗାର ଏକୁ ଗୋପପୁରୀ
ଏ ନିମନ୍ତେ ତୋତେ ଥାଉଁ ବାର ରେ । ୩ ।
ଶାଶୁମାନେ ଦୁଷ୍ଟ ନଣନ୍ଦ ଗରିଷ୍ଠ
ମିଛେ ଦେଉଥାନ୍ତି କେତେ ହାଟ । ୪ ।
ସୋମନାଥ ବୀର- ବର ନୃପବର
କରାଉଛୁ କୁଳରୁ ବାହାର ରେ । ୫ ।



## ଶ୍ରୀକୃଷ୍ଣଙ୍କ ପ୍ରତି

ରାମା, ଅକାରଣେ ମାନ ଚିତ୍ତେ ଧରନା । ପଦ ।
ପଙ୍କଜାକ୍ଷୀ ମୋର ଆଖି ତୋ ଶୋଭାରେ ଗଲୁ ଲାଖି
କାହିଁକି ହେଉଛୁ ଦୁଃଖି ନବୀନା । ୧ ।
* ବାଧୂଜିତ ହାସୀରାମା କି ଦେବା ତୋତେ ଉପମା
ଉଚିତ ଏ ନୋହେ ମହୀ ଚରନା । ୨ ।
ନଗେନ୍ଦ୍ରଗଢ ରମଣୀ ଯୁବତୀଙ୍କ ଶିରୋମଣି
ଅସୁନ୍ଦର ହେବ ରୁଷି ବସନା । ୩ ।
ବିବେକୀ ବୋଲନ୍ତି ପରା ଏବେ ତୁ ହେଉ ଅଧୀରା
ପିକଭାଷୀ ତନୁ ଖିନ୍ନ କରନା । ୪ ।
ସୋମନାଥ ବୀରଇନ୍ଦ୍ର ଭାଷନ୍ତି କହେ ଗୋବିନ୍ଦ
ଶୁଣି ରାଧା ବୋଲେ ପାଶୁ ଯାଅନା । ୫ ।



* ବାଧୂ—ଚନ୍ଦ୍ର ।

Digitized by srujanika@gmail.com

## ଶ୍ରୀକୃଷ୍ଣଙ୍କୁ ଦେଖି ଶ୍ରୀରାଧାଙ୍କ ମୁଗ୍ଧତା

କହ ସଖୀ କାହୁଁ ଏଗୋ ଆସି ରହିଅଛୁ ଏହିଠାରେ । ପଦ ।

କମ୍ବୁଧର ସୁତ ଜିଣି ଦିଶେ ତନୁ ତେଜ ବିକାଶିତ କିବା ବିଦ୍ୟୁତଭାନୁ ।
କେହୁ ଦେଇଅଛୁ ସେ ମୋହନ ବେଣୁ ଦେଖା ନ ଥିଲି ଗୋପପୁରେ । ୧ ।
(୧) ଷଡ଼ାନନଯାନ ପୁଚ୍ଛ ଶିରେ ଶୋଭି ପାଇ ମୋହୁଅଛୁ ଜଗଜ୍ଜନ ଯୁବା
କ ଯତନେ ସେହୁ ପାଇଅଛୁ ଶୋଭା ଜାଣ ଯୁବତୀ ମାରିବାରେ । ୨ ।
ଅତି କ୍ଷୀଣ କଟି ଜିଣି (୨) ବନପତି ତାର (୩) ରିପୁ ପରି ଗ୍ରୀବାର ଗତି
ମୁଖ ବିକଶିତ (୪) ଶୀତକର ଜ୍ୟୋତି, ଦେଖି କେ ବରତିପାରେ । ୩ ।
ନୂତନ ବୟସେ ସେ ତ ଏତେ ବେଶ ହୋଇବାର ଦେଖି ଲାଗୁଛି ସନ୍ଦେଶ
ରସିକ ପୁରୁଷ ପରିଏ ତ ଦିଶ ହେଉଛୁ ନେତ୍ରପଥରେ । ୪ ।
ଭଣେ ସୋମନାଥ ସିଂହ ନରନାଥ, ରାଧିକା ଦେଖି ଶ୍ରୀକୃଷ୍ଣେ ହେଲେ ରତ
କହନ୍ତି ଦୂତୀର ଧରି ବେନି ହାତ, ଭେଟାଇ ଦିଅ ତୁ ମୋରେ । ୫ ।



## ବ୍ରଜଦାଣ୍ଡରେ ଗୋଧନବାହୁଡ଼ା ଶ୍ରୀକୃଷ୍ଣଙ୍କ ଶୋଭା

ସଖୀ ଅନାଅ ରେ ଏ ବ୍ରଜ ଦାଣ୍ଡର
ବସ୍ତ୍ରାବୃନ୍ଦ ଘେନି କୃଷ୍ଣ ଆସେ ସଙ୍ଗତର । ଘୋଷା ।
ଭାଇ ବଳରାମ ତାଙ୍କ ଗୋପାଳେ ଆବର,
ଚନ୍ଦ୍ରମା ପରିଏ ଦିଶେ ଯଶୋଦାକୁମର । ୧ ।
ନୀଳକଣ୍ଠ ପୁଚ୍ଛ ଚୂଳ ଦିଶଇ ସୁନ୍ଦର
କ ସୁନ୍ଦର ସାଜିଅଛୁ ବେଣୀକ ତାହାର । ୨ ।
ଭାଲେ ଗୋରଚନା ଚିତା ଅତି ମନୋହର,
ଝଟ ଝଟ ଦିଶେ ନାସେ ମୁକୁତା ତାହାର । ୩ ।
ହୃଦରେ ପଦକ ଶୋହେ ନାନା ଅଳଙ୍କାର
କରରେ ମୁରଲୀ ତାର ଯୁବାଜନ ମାର । ୪ ।
ଏ ଛବି ଦେଖିଣ କେହୁ ନୋହିବ କାତର,
ଭଣେ ସୋମନାଥ ରାଜା ମୋ ମନ ଅଧୀର । ୫ ।



(୧) ଷଡ଼ାନନଯାନ — ମୟୂର, (୨) ବନପତି — ସିଂହ, (୩) ରିପୁ — ଶମ୍ଭୁ,
(୪) ଶୀତକର — ଚନ୍ଦ୍ର ।

Digitized by srujanika@gmail.com

## ଶ୍ରୀକୃଷ୍ଣଙ୍କ ଗୃହ୍ଟ ( ରୂପ ପ୍ରଶଂସା )

ଆରେ ମୃଗଲୋଚନା ଶ୍ୟାମା, କଣ୍ଠିତରେ ଥରେ ମୋତେ ଅନା ରେ । ଘୋଷା ।

ଭ୍ରୂଲତା ବେନି ତୋ' କାମ କମାଣ ମନ୍ଦେ ମନ୍ଦେ ହସି କରେ ଗମନ

କଣ୍ଠଗତ ବରଜମଣ୍ଡନାରେ । ୧ ।

ଡୋଳା ତୋହର ନୀଳମଣି ଜିଣି ନାସାତଳ ଫୁଲ୍ ନନ୍ଦଇ ପୁଣି

ଦନ୍ତପନ୍ତ ମୁକୁତା * ଦୃଛନା ରେ । ୨ ।

ବିମ୍ବ ଫଳ ପରି ଦିଶେ ଅଧର ମୃଣାଳ ପରି ଅଟେ ବେନି କର

କାନ୍ତ ତୋର କେତେକା ଦୃଛନା ରେ । ୩ ।

ଅତି ଖିନ୍ନ ଅଟେ ମଝା ତୋହର ଶ୍ରୋଣୀ ଅଟଇ ଯଦ୍ଦବଳଣ୍ଡର

ବହୁଅଛୁ ତୁ ଭଲ ସିନା ରେ । ୪ ।

ମୁରଲୀଧରର ବଂଶୀବାଣୀ ଶୁଣି ତୋଷ ହେଲ ରମଣୀମଣି

ଭଣେ ସୋମନାଥ ରାଜା ସିନା ରେ । ୫ ।



## ଶ୍ରୀରାଧା ପ୍ରତି ଶ୍ରୀକୃଷ୍ଣଙ୍କ ଗୃହ୍ଟୋକ୍ତି

ସଙ୍ଗାତ, ମୋତେ ବାରେ ଦୟାକର, ପୀଡ଼ୁଅଛୁ ପଞ୍ଚ ଶର ଗୋ । ଘୋଷା ।

ଯମୁନାକୁ ଯାଇଥିଲୁ ଦେଖିଲଇଁ ତୋଲେ

କହିବାକୁ ଭାଷା ସମସ୍ତ ନୋହିଲ

ଥିଲୁ ସଖୀଗଣ ମେଳରେ । ୧ ।

† ପୁରନ୍ଦରବାହନ ପରାଏ ତୋର ଗତି

ନାହିଁ ନ ଥିବେ ତୋ ପରି ସଂସାରରେ

ଖୋଜିଲେ କେତେ ଯୁବତୀ । ୨ ।

ସାଜିଥିଲୁ କି ଯତନେ ଲୋଟଣୀର ଜୁଡ଼ା

ମଥାମଣି ତୋର ଝଟ ଝଟ ଦିଶେ

ଯୁବାଜନ ଚଉଚୂଡ଼ା । ୩ ।

---

* ଦୃଛନା—ଦର୍ଶନା

† ପୁରନ୍ଦରବାହନ—ହସ୍ତୀ

Digitized by srujanika@gmail.com

ପୂର୍ଣ୍ଣ ବିଧୁ ବଦନରେ ପ୍ରକାଶିଲୁ ହାସ
ନାସାର ବସଣି ଝୁଲିବାରୁ ପୁଣି
ଅଧିକେ ବଳେ ମାନସ ରେ । ୪ ।

ଶ୍ରୀକୃଷ୍ଣ ବଚନ ଶୁଣି ରାଧା ହେଲେ ତୋଷ,
ଭଣେ ସୋମନାଥ ସାରବର ଜଗ—
ଦେବ ଗୀତେ ଏହୁ ରସ ରେ । ୫ ।



## ସଖୀ ପ୍ରତି ନବାନୁରାଗିଣୀ ରାଧା

ସହି ନୋହିଲା ଗୋ ଫେଡ଼ିଲି ଲାଜ ମୁଁ ଆଜ
ନ ରହିଲା ମୋର ହେଜ, ଦେଖି ବ୍ରଜ ଯୁବରାଜ । ଘୋଷା ।

କମ୍ପୁଅଛି ମୋର ତନୁ  ସେ ଶୋଭା ନ ଯାଏ ମନୁ
ଆସୁଥିଲେ ବୃନ୍ଦାବନୁ  ମୋହନ ଅଡ଼ାଇ ଧେନୁ
ଶ୍ରୀକରେ ମୋହନ ବେଣୁ  ଦିବ୍ୟ ନୀଳମଣି ତନୁ
ନ ଗୁଡ଼ଇ ମୋର ମନୁ  ନାହିଁ ଗତି ତାହା ବିନୁ । ୧ ।

ଦମ୍ଭ ନ ପାରିଲି ସହି  ବରହୀ ପୁଚ୍ଛକୁ ଚାହିଁ
ବାନ୍ଧିଲା ମଦନ ରହି  ବଚନ ନଇଲି କହି
ଥିଲେ ଗୋପସୁତ ମିଳି  ଚନ୍ଦ୍ର କି ତାରକାବଳି
ନାଚୁଥିଲେ ଚଳି ଚଳି  ଢଳେ ନ ପାରିଲି ଚଳି । ୨ ।

ସହିଁକି କରଇ ଖ୍ୟାତି  ପଡ଼ିଲି ତାହାର ଗତି
ଜାଣୁଛି ନୋହିବ ବର୍ତ୍ତି  ଦିଶୁଛି ମଧୁର ମୂର୍ତ୍ତି
ହେବ ଜାଣ ଅପକୀର୍ତ୍ତି  ଦିନକୁ ଦିନକୁ ପ୍ରୀତି
ବଢ଼ୁଅଛି ହୃଦେ ନିତି  ହୁଅଇ ଗୁପତ କରାତି । ୩ ।

ଭାଳିଲେ ଦିନ ନ ସରେ  ବାସ କଲି ମନମରେ
ଅଛି କି ମୋ କରମରେ  ହେବ କି ତୋ କରମରେ
ପାରିଲେ ଉପାୟ କର  ନିଷ୍ଠୁର ହୃଦ ନ କର
ସୋମନାଥ ସାରବର  ଭାଷନ୍ତି ହେଦ ନକର । ୪ ।



Digitized by srujanika@gmail.com

## ସଖୀ ପ୍ରତି ରାଧା

( ବଂଶୀ-ପ୍ରଭାବ )

ସହି ନ ପାରେ ବଂଶୀ ସ୍ୱନକୁ ଗୋ । ପଦ ।

ଏକା ଡାକିଲା ପୁଣ ଧରଣ ମୋହି ନାମ
ଯେତେ ମୁଦିଲେ ଶୁଭେ କାନକୁ ଗୋ । ୧ ।

କାହୁଁ ପାଇଲା ସେହି ଯୁବତୀ କୁଳ ଦହି
ପକାଇ ଆମ୍ଭର ଜୀବନକୁ ଗୋ । ୨ ।

କୁଳଟା ଅପବାଦ ନଗ୍ରେ ବାଜୁଛି ବାଦ୍ୟ
ନ ମାନେ ମୋର ମନ ଗୁରୁଙ୍କୁ ଗୋ । ୩ ।

ସୋମନାଥ ନୃପତି ଭୁପନ୍ତି ସେହି ପ୍ରୀତି
ଆନ ନ କର ତୁମ୍ଭ ମନକୁ ଗୋ । ୪ ।



## ସଖୀ ପ୍ରତି ନବାନୁରାଗିଣୀ ରାଧା

ଶ୍ୟାମସୁନ୍ଦରେ ରସିବ ଥରେ—
ବୋଲି କରି ଚିତ୍ତ ହେଉଛି ରେ । ପଦ ।

ନୀପ ମୂଳରେ ଦେଖିଥିବାରେ
ସେହିଦିନୁ ମନେ ପଡ଼ୁଛି ରେ । ୧ ।

ବଙ୍କିମା ଚୂଳେ ଗମ୍ଭୀର ପରେ
ପାଇବାରୁ ସହି ନୋହୁଛି ରେ । ୨ ।

ଗୃହିଁଦେବାରେ ତା ନେତ୍ର ଶରେ
ମୋ ନେତ୍ର ଲଖି ରହିଛି ରେ । ୩ ।

ରସିକ ବରେ ତନୁ କାନ୍ତିରେ
ଘନକୁ ଘନ ସେ କରୁଛି ରେ । ୪ ।

ଶ୍ରୀ ସୋମନାଥ ନରଙ୍କ ନାଥ
ସେ ସଙ୍ଗେ ଚିତ୍ତ ରହିଛି ରେ । ୫ ।



Digitized by srujanika@gmail.com

## ସଖୀ ପ୍ରତି ରାଧା

ହେଉ ପଛେ ଅପବାଦ, ମୋହନେ ରସିବି ମୁହିଁ । ପଦ ।

ନ ପାରେ ବାସେ ରହି ବଂଶୀ ସ୍ୱନରେ ବାଇ—
କରିଦେଲା ମୋର ଦେହ କି ମନ୍ତେ ସେହୁ ମାଧୋଇ । ୧ ।

ଏକେ ତ ଅବଳା ମୁହିଁ ନ ପାରଇ ଏହା ସହି
ଅଧିକେ ମାର ମାରଇ ମରମ ହେଉଛୁ ଦହି । ୨ ।

ଥରୁଅଛୁ ମୋର ତନୁ ଚିନ୍ତା କରି ଦନୁ ଦନୁ
ପାସୋର ନ ଗଲା ମନୁ କେମନ୍ତେ ବଞ୍ଚିବି ମୁହିଁ । ୩ ।

ପତି ସୁତ ନ ଦିଶଇ ଏକା ତା ରୂପ ଦିଶଇ
ବାସ ବେଶ କି ହେବଇ ଭୋଜନେ ତ ଇଚ୍ଛା ନାହିଁ । ୪ ।

ସୋମନାଥ ବୀରବର ଶ୍ରୀପତି ପ୍ରୀତି ନ କର
କରିବାର ତ ବିଗୁର ନୋହିଲେ ନ ଛାଡ଼େ ସେହି । ୫ ।



## ବିରହୋତ୍କଣ୍ଠିତା ରାଧା

(ତାଳ—ଏକତାଳି)

ମୋତେ ନ କହ ଗୋ ଶ୍ୟାମବନ୍ଧୁର କଥା
ମୋ ନଣନ୍ଦ ମନ୍ଦ ମିଛେ କରେ ଦ୍ୱନ୍ଦ
ଟେକି ନ ଗୁଲଇ ମଥା । ଘୋଷା ।

ଯମୁନା ଜଳକୁ ନ ଯାଏ ଗାଧୋଇ
ତହିଁ ପଡ଼ିବାକୁ କଥା
ଯଶୋଦା କୁମର ନାମ ଯେ ଧରଇ
ଶୁଣି ହୃଦେ ପାଏ ଚିନ୍ତା । ୧ ।

ରହିଥାଏ ପୁରେ ନ ଯାଏ ବାହାରେ
ଆଣିଥିବେ ବୋଲି ବର୍ତ୍ତା
ରଞ୍ଜଇ ନାହିଁ କଳା ବୋଲି ଅଞ୍ଜନ
ନେତ୍ର କରିଥାଏ ରୁକ୍ଷ । ୨ ।

Digitized by srujanika@gmail.com

ଲଗାଏ ନାହିଁ କସ୍ତୁରୀ ଖିଲପଟେ
ତା କପୋଳେ ଏହୁ ଚତା
ଲଘୁ କଲେ ଏବେ ଏ ବ୍ରଜ କାମିନୀ
ଶୁଣି ଚତ୍ରେ ପାଏ ଚନ୍ତା । ୩ ।

ଭୁଲିଅଛୁ ସଖି ସମସ୍ତଙ୍କ ଗୁଣ
ଯେ ଯାହା କହଇ ବୃଥା
ବରଜ ସୁନ୍ଦର ଖିବରେ କହ ତ
କେହୁ ବୃଦ୍ଧ ନାହିଁ ତଥା । ୪ ।

ସରଳିଣୀ ଏବେ କରିବ କ ବୁଦ୍ଧି
କହନ୍ତ ବହୁତ ମିଥ୍ୟା
ସୋମନାଥ ସିଂହ ବୀରବର ବୋଲେ
ନ କର ରାଧିକା ଚନ୍ତା । ୫ ।



## ଶ୍ରୀକୃଷ୍ଣଙ୍କ ଗୀତ

ମୀନନୟନା ରେ । ପଦ ।

ମଦନ ଶରରେ ବନ୍ଧୁ ରେ ହୋଇଲି ମୁଁ ଘାରି
ମୋ ନୟନେ ତୋର ଶୋଭା ରହିଅଛୁ ପୂରି । ୧ ।

ମରମ ଦହି ହେଉଛୁ ରେ ଚନ୍ଦ୍ରମୁଖ ଦେଖି
ମାର ନାହିଁ ମାର ହାତେ କେହି ନାହିଁ ସାକ୍ଷୀ । ୨ ।

ମହୀରେ ନ ହସା ମୋତେ ରେ ଚମ୍ପା ବରନା
କଛୁ ବୁଦ୍ଧି ଦେଖ ବା ଯେ ବ୍ୟାପିତେ ସିନା । ୩ ।

ମୀନ କେତନ ଖିଡ କ ଧନ ସ୍ନେହ ଦମ୍ଭ
ମାଗୁଛୁ ମୁଁ ଧରି କର ନ କରିଅ ଦମ୍ଭ । ୪ ।

ମଧୁରେ ହସିଲା ସଖୀ ଶୁଣି ଶ୍ୟାମ ବାଣୀ,
ମହୀପତି ସୋମନାଥ ବୀରବର ଭଣି । ୫ ।



Digitized by srujanika@gmail.com

## ରାଧା ଭାବରେ ବାହୁଳ କୃଷ୍ଣ

ରସବନ୍ତୀ ନୟନ ସ୍ମରି ରେ ମୋ ନାଗରବର । ପଦ ।
ବାଜଗଲେ ହୃଦର, ଅଥୟ ହୁଏ ଧୀର
ତନୁ ହୁଅଇ ଥର ଥର ରେ । ୧ ।
ଧରି ବିନ୍ଧଇ ମାର, କରଇ ହରବର
ଚନ୍ଦ୍ରବଦନୀ ହସିବାର ରେ । ୨ ।
ତା ସ୍ନେହ କରେ ମୂଳ, ଆନକୁ କରି ଦୂର
ସେ ଦରହାସେ ଜର ଜର ରେ । ୩ ।
ଗଲା ସେ ପ୍ରୀତି ସାର, ନାହିଁ ଏ ତନୁ ସ୍ଥିର
ଗଜଗମନା ମୋହିବାର ରେ । ୪ ।
ଶ୍ରୀ ସୋମନାଥ ବୀର- ବର କହନ୍ତି ଗିର
ରାଧା ଭାବରେ ନଟବର ରେ । ୫ ।

●

## ଶ୍ରୀରାଧାଙ୍କ ଉକ୍ତି

ଛଇଳ ଶ୍ୟାମନାଗର
ଭାଷା ପଦକ ତା ହୃଦୟହାର, ରେ ରସବନ୍ଧୁ
ନ ଯାଏ ମନୁ ପାସୋର । ୧ ।
ପୀରତି ଜାଣଇ ସେହୁ
ଦମ୍ଭ ହୋଇଥିଲେ ଅଦମ୍ଭ କରାଏ, ରେ ରସବନ୍ଧୁ
ହସି କଥା କହେ ଦହୁଁ । ୨ ।
ରମଣୀ କେଡ଼େ ଯତନ
ସ୍ନେହ ଧନ ଦେଇ କିଣି ରଖିଥାଏ, ରେ ରସବନ୍ଧୁ
କାହିଁ ନୋହିବ ଏ ଜାଣ । ୩ ।
ମଧୁର ମୂରତି ଦେଖି
ନୟନ ମୋହର ପିଛଡ଼ି ନୁହଇ, ରେ ରସବନ୍ଧୁ
ଆୟତ୍ତ ନ ପାରେ ରଖି । ୪ ।
ସୋମନାଥ ବୀରବର
ଭାଷନ୍ତି କାହିଁକ ହୁଅ ଆତୁର, ରେ ରସବନ୍ଧୁ
ସବୁଦିନେ ସେ ତୋହର ରେ । ୫ ।

●

Digitized by srujanika@gmail.com

## ଶ୍ରୀକୃଷ୍ଣଙ୍କ ବିନୟ ଉକ୍ତି

ମନ୍ଦିଲା ଫେର ତୁ ନ ଯା ବାରେ । ଘୋଷା ।

 କ୍ଷମାକର ଦୋଷ, ଆସ ଆସ ମୋର ପାଶ
କାମ ସନ୍ତାପ ନାଶ, ଅମିୟ ବାଣୀ ଭାଷ
ନ ହୁଅ ଆଉ ଉଦାସ, ଘେନ ତୁ ରେ । ୧ ।

ଶଶୀଜିତ ହାସୀ ହରଷରେ ରସି
ରସ ବରଷା ଆସି ସୁରସିକା ବର ରାଶି
କାନ୍ତି ଭୁହାଅ ନାଶି ଏଥର ରେ । ୨ ।

ସୁରଙ୍ଗ ଅଧରୀ, ଯଉବନ ଭରି
ବସାଅ ଅଙ୍କେ ଧରି ନ ହସାଅ ଅଇରି
ରସାମଞ୍ଜିନା ପରି, ନାହିଁ ମୋରେ । ୩ ।

ସୋମନାଥ ବୀର ବଚନ ଈଶ୍ବର
ଶ୍ୟାମ ବିନୟ ଗିର ଶୁଣି ହୋଇ କାତର
ତରତରରେ ଚିର, ଦେଲ ମୁଖରେ ରେ । ୪ ।



## ଶ୍ରୀକୃଷ୍ଣଙ୍କ ଗ୍ରଣ୍ଠ

ନ କର ବନ୍ଧୁ ଗୁହଁ ନେଶ ସରୋଜ ଭାଗୁ ମଦନରାଜ କହୁଅଛୁ ତୋର ରେ । ୧ ।

କର କରୁଣା ବାଣା, ବାଣୀକ ଶୁଣା, ଲବଣ୍ୟନିଧି ରମା, ଘେନ ରସାମଞ୍ଜିନା ।
ଅରୁଣାଧରୀ ବିନା, ନାହିଁତ ସିନା ରେ । ୨ ।

ନବ ନାଗରୀ ଉରଜ ଭରି ନ ଥିବେ ତନ ପୁରୀ ଖୋଜିଲେ କାହିଁ ନାରୀ ।
ରସିକା ସହଚରୀ ଅଟୁ ତୁ ଧନ ରେ । ୩ ।

ଲଭିବ ପ୍ରୀତିରଙ୍ଗେ ମାତି କରିଚ ପ୍ରଜାପତି ଏଥି କାହିଁଛୁ ନାସ୍ତି
ତୋ ଅନୁରାଗ ଗତି ଗଜଗମନା ରେ । ୪ ।

ଶ୍ରୀ ସୋମନାଥ ରାଜଇନ୍ଦ୍ର ଗୀତ ଶୁଣି ଯଉଁମିତ ନଟବର ରେ ଚାଉ
ଦେଇ କରି ତୁରିତ ରମଣୀମଣି ରେ । ୫ ।



Digitized by srujanika@gmail.com

## ଶ୍ୟାମ-ପ୍ରୀତି

ଟାଣ କର ରହ୍ଥ ନୁହେ ଗୋ ଶ୍ୟାମଘନେ
ମଦାଳସୀ ରସିଯାନ୍ତି ବଂଶୀସ୍ୱନେ । ପଦ ।

ଭଲ୍ଲ ଯତନେ ସଜାଡ଼ିଲ୍ଲ ଯୁବତୀ ମନ ମୋହିଲ୍ଲ
ଶୁଣିଲେ ରହ୍ଥ ନୋହିଇ ଘରେ କ୍ଷଣେ । ୧ ।
ପଛକୁ ଲଜ ପକାଇ ତାରଠାରେ ମଜ୍ଜି ଯାଇ
ଅଙ୍ଗନା ଅଙ୍ଗ ଥରେ ଦେଖି ନୟନେ । ୨ ।
ରୂପକୁଟି ଜିଣି କାମ ମୁଖଚନ୍ଦ୍ର ହିଁ ସମାନ
ଗୃହିଁଲକ୍ଷଣି ବିନ୍ଧଇ ପଞ୍ଚବାଣେ । ୩ ।
ପଢରେ କିସ୍ତା ଉଚତ, ଦେଇ କରଥିବ ବ୍ରତ
ରଖି ନ ପାରିବେ ଧର ସେହୁମାନେ । ୪ ।
ସୋମନାଥ ବୀରବର ଭାଷେ ତାର ପ୍ରୀତସାର
ଯାହାକୁ ଧ୍ୟାନ କରନ୍ତି ଯୋଗୀଜନେ । ୫ ।

●

## ଶ୍ରୀକୃଷ୍ଣଙ୍କର ରାଧା ଭାବନା

ଧନ ମୋହୋ ଜୀବ ଜୀବନ, ତା ଶୋଭା ଦେଖି ଲୋଭ ହୋଇଲା ପଞ୍ଚମନ । ୦ ।

କରିଦାଏ କାତର ତନୁ, ପାସୋର କେବେ ନ ଯାଏ ମୋର ମନୁ
ବ୍ରଜ ନାଗରୀବର, ଶୁଲନ୍ତେ ଧୀର ଧୀର ମଣ୍ଡୁଥାଏ ସଂସାର, ରସିକା ରତନ ଧନ ।୧।
କରୀନ୍ଦ୍ରକୁ ଜିଣିକରି ଗତି, ଗତେ ନ ଥିବ ଛବି ଏବେ ନାହିଁ ନା ଏହୁ କ୍ଷିତି ।
ସଜନୀଗଣେ ସହି, ଚନ୍ଦ୍ର ଜିଣି ହସଇ, ମୁଖ ତା ବିରାଜଇ, ନବୀନ ବୟସୀ ଧନ ।୨।
ଗେଲେ କହନ୍ତେ ହସି ହସି, ଅଧରୁ ତାର ଅମିୟ ପଡ଼ୁଥାଏ ଖସି
ଚମ୍ପାଗୋରୀ ଗୃତୁରୀ, ଦେଖି ମଦନ ଘାରି, ନ ପାରିବେ ସେ ତରି
କଟାକ୍ଷେ ଗୃହିଁଲେ ଧନ । ୩ ।
ଶୋଭା ପାଏ କାଖେ କୁମ୍ଭ । କୁମ୍ଭସ୍ତନାର ଦେଖିଲ୍ଲବେଳେ ସେ ଆରମ୍ଭ ।
ଅମରାବତୀ ନାରୀ, ନ ଜାଣି ସେ ଗୃତୁରୀ, ଆଉ କେ ଅବା ସରି,
ରମଣୀ ରତନ ଧନ । ୪ ।
ଶ୍ରୀ ସୋମନାଥ ବୀର ଇନ୍ଦ୍ର, ଭାଷନ୍ତି ରାଧା ଭାବନା କରନ୍ତି ଗୋବିନ୍ଦ
ଆନନ୍ଦେ ନଟବର, ହୋଇଣ ଜର ଜର ଧରଣ । ୫ ।

●

Digitized by srujanika@gmail.com

## ଶ୍ରୀକୃଷ୍ଣଙ୍କ ଗୃହ୍ନ

ଆସ ପାଶେ ବସ ରେ ସୀଣା ବଚନା
ରସି ମୋ ଅଙ୍କରେ ବସ, ମାର ଛାପ ହେଉ ନାଶ
ଚୁମ୍ବ ମଣ୍ଡି ରଖ ଗୀରଢକ ସିନା ରେ । ପଦ ।

ନବ ନାଗରୀ, ଚମ୍ପକ ଗୋରୀ, କରକ ଦନ୍ତୀ ତୁ ତ ସୁଜାଣ
ରସିକମା ରାଜ, ଲଗାଅ ଉରଜ, ସେବଥିବ ନିରନ୍ତର ସିନା ରେ । ୧ ।

ନାଗରୀ ବର, ମୁଁ ତ ତୋହର, ହରରପୁ ମୁଖରେ ତୁ ଢଥନା,
ଛଢ଼ିକ ଡର, ବନ୍ଧୁତ ମୋର, ସ୍ନେହ ରସ ବରଷାଅ କନା ରେ । ୨ ।

ଧର ସୁମନ, କହୁଛୁ ଧନ, ବାରେ ଟେକ ତ ଚନ୍ଦ୍ର ଆନନ,
ଅସ୍ଥ ହେବ ମନ, ବମ୍ବାଧରୁ ପାନ, ପିଆଇଣ ରଖ ରେ ନବୀନା ରେ । ୩ ।
ଶ୍ୟାମର ବାଣୀ, ଶୁଣି ରମଣୀ—ମଣିକମଲ ନେତ୍ରେ ଅନାଇଁ
ସୋମନାଥ ସାରବର ନରେଶ୍ୱର, ଭୁଷେ ରସେ ହେଲେ ତୋଷମନା ରେ । ୪ ।



## ଶ୍ରୀକୃଷ୍ଣଙ୍କ ଗୃହ୍ନୋକ୍ତି

ରସସିନ୍ଧୁ ରେ ମୋରେ, ଭୁଙ୍ଗି ନୟନ ଅନାଅ ଥରେ । ପଦ ।

ପଞ୍ଚବାଣ ଦେଇ ସାହାଣ, କରଥିଲି ବଚନ ମୁନ,
ବାନ୍ଧଦେଲି ଷଣି ବାଜ ମୋ ହୃଦଦ୍ରେ, ବୁଡ଼ି ରହିଲି ପକ୍ଷୀ ସହିତ ରେ । ୧ ।
ଏକେ ଅଟେ ମଦନଶର, ଯୁବାଗର୍ବ କରଇ ଚୁର,
ଆରେ କୁନ୍ଦନାଙ୍ଗୀ ଉଡ଼ିଗଲି ଜ୍ଞାନ, ଅସ୍ଥ ନୁହେଁ ଚଉ ଧର, ଉପରେ
ସ୍ଥିର ବୁଦ୍ଧି ହେଲା ଅସ୍ଥିର, ତନୁ କରଦେଲି କାତର । ୨ ।



## ଶ୍ରୀକୃଷ୍ଣଙ୍କ ଶ୍ରୀରାଧାଙ୍କ ପ୍ରତି ବିନୟ ଉକ୍ତି

ଘେନ ବନ୍ଧୁ ରେ ରସିକାରଞ୍ଜନ ( ଘୋଷା )

ହସି ମୋ ପାଶେ ବସ, ଆସ ଅଙ୍କରେ ବସ, ନାଶ ମଦନ ଛାପ ରେ,
କରୁଛୁ ବଡ଼ ଧାପ, ନାହିଁ ଏଥିରେ ମାପ ରଖ ବାରେ ବନ୍ଧୁ ରୁ । ୧ ।

Digitized by srujanika@gmail.com

କମ୍ପାଉଛି ତନୁକୁ, ଧରି କରେ ଧନୁକୁ ମାଜିଅଛୁ ଗୁଣକୁ ରେ,
ସନ୍ଧି ପଞ୍ଚବାଣକୁ ନେବ ବୋଲି ପ୍ରାଣକୁ ଜାଣେ ବାରେ ବନ୍ଧୁ ତୁ ରେ ।୨।

ନାମ ତାର ମାରଯା, ମାରିବାକୁ ତରଜା, କଲୁ ଉଚ୍ଚ ଉରଜା ରେ
ତୁ ତ ନାଗସ୍ତ୍ରୀ ରାଜା କ୍ଷଣେ ମୋ ମନ ମଜା ଏଥର ବନ୍ଧୁ ତୁ ରେ । ୩ ।

ସୋମନାଥ ଶ୍ରୀ ବୀରବର କହନ୍ତି ଗିର ବିରହେ ନଟବର
ଧରିଣ ରାଧାକର ହୋଇଣ ଜର ଜର କସାନ୍ଦ୍ର ଗତି ବନ୍ଧୁ ତୁ ରେ । ୪ ।



## ଶ୍ରୀରାଧାଙ୍କ ପ୍ରତି ଶ୍ରୀକୃଷ୍ଣ

ଯେତେ ଉପାୟ ମୁଁ କଲି ମୋ ମନରେ
ଅଧିକେ ଜଡ଼ି ରହିଲା ଭିତରେ,
ବଢ଼ାଇଣ ଦେଲୁ ପ୍ରୀତିକି, ଅଗ୍ରିଇଣ ଦେଲୁ ସ୍ମୃତିକି
ଏହା ଆଉ ଥରେ ବଞ୍ଚିତ ନୁହଇ
ପଞ୍ଚ ପ୍ରାଣ ରହିଲା ପଞ୍ଚ ଶରେ
ସ୍ପଷ୍ଟେ ସୋମନାଥ ବୀରେନ୍ଦ୍ର, ରାଧା ଆଗେ କହେ ଗୋବିନ୍ଦ,
ଶୁଣିଣ ରମଣୀ ଜର ଜର ହୋଇ
ଅଙ୍କେ ଆଣି ପ୍ରୀତି ସହିଲା ଧୀରେ ।



## ଶ୍ରୀକୃଷ୍ଣଙ୍କ ଭକ୍ତରୂପାନୁଭାଗ

ସଜନୀ ରସବତୀ, କରିଗଲା ଯେଉଁ ଗତି
ମାରିଦେଲା, ମୋ ହୃଦରେ ଖଞ୍ଜନନେତ୍ରୀ କାନ୍ତି । ଘୋଷା ।

ତନୁ ହେଲା ଥର ଥର     ମଦନ କଲା ଅସ୍ଥିର
ବିଧୁବଦନରେ ତାର
ମନ୍ଦହାସ ପ୍ରକାଶିତ । ୧ ।

ଧରା ପରେ ସ୍ଥିର ହୋଇ     ନ ରହଇ ମୋର ଦେହ
କୁନ୍ଦଦନ୍ତୀ ପ୍ରାଣସଖି
ପ୍ରୀତିର ସିନା ଏ ରୀତି । ୨ ।

Digitized by srujanika@gmail.com

ବିଷମ କରଇ ଜାଣ ସେ ଚତୁରୀ ରୂପ ଧ୍ୟାନ
କାହୁଁ ନ ହରେ ନୟନ
ସେ ସୁନ୍ଦରୀ ଗଜଗତି । ୩ ।

ମରମ ହେଉଛି ଦନ୍ଦ ସେ ସ୍ନେହ ପାଇବା ପାଇଁ
ନୋହିଲେ ତ ବଞ୍ଚି ନୋହି
ନ ପାଇଲେ ତାର ପ୍ରୀତି । ୪ ।

ବୋଲନ୍ତି ଶ୍ୟାମସୁନ୍ଦର କରିବ ଗଳାର ହାର
ସୋମନାଥ ବୀରବର—
ସିଂହ ଏ ରସେ ବଦତି । ୫ ।

●

## ଦୂତୀ ପ୍ରତି କୃଷ୍ଣ

ଶଶୀ ବିତହାସୀ ସଜନୀ ରେ, ଶ୍ରୀମୁଖ ପୋଡ଼ିଲୁ କି ଘେନି ରେ
ନୂତନ ଧନୁ କରିଥିଲି ଆଶା, ନବୀନା ବିନା ମୋ ନାହିଁ ଭରସା
ମଦନଜିତା ଦେବୁ ବୋଲି ଦଶା ହୋଇବ ଜାଣ ଏବେ ଲୋକହସା ।୧।
ମୀନକେତନକୁ ନ ଡରେ ପୁଣି, ଭରସା ଥିବାରୁ ଗଜଗମନୀ
ଏବେ ତ ହୋଇଛି ବଡ଼ ଖଲେଣି, ନ ଗୁହିଁଲି ବାରେ ରମଣୀମଣି । ୨ ।
ଜଣା ତ ଗଲା ତାର ପୀରତିରେ, ହୃଦସ୍ଥ ହେଉଛି ମୋ କରତି ରେ
କାରଣ କରିବ ବୋଲି ଚତୁରେ, ବିସ୍ମରୁଥାଏ ମୁହିଁ ନିରନ୍ତରେ । ୩ ।
ଅନ୍ତରଗତି ତା ଥିଲା ମନରେ, ବୁଝାଗଲା ଏବେ ଏତେ ଦିନରେ
ନ କଲା କରୁଣା କାମିନୀ ଶଉରେ, ଏହା କି ଧଇଲା ସୁଚତୁରେ । ୪ ।
ଫୁଲୁଥାଏ ଦେଖିକରି ଗୃତୁରୀ, ଚମ୍ପାବରନା ରସିକନୀ ନାରୀ
ପର ପରି କରି ଦେଲା ବିସ୍ମରି, ଏ କଥା କି ଉଚିତ ଯେ ତାହାରି । ୫ ।
ମଦାଳସୀ ସ୍ନେହ ନ କଲା ବାରେ, ମହିଳା ମଣିକି ଗୁହିଁଲି ରେ
ଶ୍ୟାମସୁନ୍ଦର ଦୂତୀ ଆଗରେ, କହୁଅଛନ୍ତି ସେ ବିମ୍ବ ଅଧରେ । ୬ ।
ସୋମନାଥ ବୀରବର ବିସ୍ତରେ, ରସିବ ଅବଶ୍ୟ ରମଣୀ ଥରେ
ପାରିଲେ ବୁଝିବା ଅଙ୍ଗୀକରିତରେ, ନୋହିଲେ ନ ପାରେ ମୁଁ ବରତିରେ । ୭ ।

●

Digitized by srujanika@gmail.com

## ଶ୍ରୀକୃଷ୍ଣଙ୍କ ଚାଟୂକ୍ତି

ଆସିଲା ସର ଚନ୍ଦ୍ରମା ସହୁ ମୁଖ୍ୟ ଉତ୍ସୁର, ମୁଖ ଦଣଇ ଯେ ତାହାର । ଘୋଷା ।

ହସ ଯେ ହସ ହସ, ଆରେ ନାଗରୀଋଣ, ବମ୍ବ ଅଧରୀ ଚମ୍ପା ଗୋରୀ । ୧ ।
ଗଜଗତି ଚତୁରୀ ନ ଥିବେ ତିନ ପୁରୀ, ମଦନଜନ୍ତା ମନୋହାରୀ । ୨ ।
ପ୍ରୀତିବତ୍ସଳା ବାଲୀ, ବନ୍ଧୁଗଲାରେ ମାଲୀ, ସେ ସୁନ୍ଦରୀ କ୍ଷୀଣ ଉଦରୀ । ୩ ।
ରସିକା ରହୁ ରହୁ, ପରଖ ପ୍ରୀତି ତୁହୁ, ସେ ଶୋଭା କେହୁ କହିପାର । ୪ ।
ଶ୍ୟାମ ହସି କହନ୍ତି, ଶୁଣି ତୋଷ ଶ୍ରୀମତୀ, ସୋମନାଥ ନୃପ ବିଚାର । ୫ ।



## ଦୂତୀ ପ୍ରତି ରାଧା

ପ୍ରୀତି ଯେନ ମୁଁ ମଲି କମ୍ପା, କେବେ ଗୁହ୍ନିଲି ଗୋ
ମାର ମାର ମଦନ ଝାଡ଼ିଦେଲା ମୋ ତନୁ
ଭଲି ଭଲି କରନ୍ତେ ବେଦନା ପାଇ ମନୁ ।
କା ଆଗେ କହିବ ମୋ ସାହା କେ ତାହା ବିନୁ
କଣିନେଲା ପ୍ରାଣ ଜାଣ ମୋହନ ବେଣୁ । ପଦ ।

ସରମ ନ ରଖିଲି କରମକୁ ରଖିଲି
ଭରମରେ ପଡ଼ିଲି ଧରମକୁ ଏଡ଼ିଲି । ୧ ।

ତାରେ କଲି କାମନା ନ ଘେନଲି ତା' ମନା
ତାଙ୍କ ସୁରସ ବନା ଆନ ନାହିଁ କାମନା । ୨ ।

ପରେ କଲି ପୀରତି ନରେ ହେଲି ଅକୀର୍ତ୍ତି
ଘରେ ମନ୍ଦଜରତି ମଜ୍ଜିଲି ଯାହା କତି । ୩ ।

ସୋମନାଥ ନୃପତି ବୀରବର ବଦତି
ଦୂତୀ ଆଗେ ଶ୍ରୀମତୀ ସାର ନାଗରପ୍ରୀତି । ୪ ।



Digitized by srujanika@gmail.com

## ସଖୀ ପ୍ରତି ରାଧା (ପ୍ରଶ୍ନ ପ୍ରସ୍ତାବ)

ଶ୍ୟାମସୁନ୍ଦର କଥା କହନା । ପଦ ।

ଦେଖିଲେ ଅସ୍ତ୍ର ନୋହେ ଦେଖା ରେ ଅସ୍ଥିର ହୁଅଇ ତନୁ ।
ନ ଯାଏ ରୂପ ମନୁ ତର ନ ଯାଏ ମୁହିଁ ଯମୁନା । ୧ ।
ଘରେ ନଣନ୍ଦ ରୋଷ ବହୁଛ ରେ ମିଛେ ବସାଏ ହାଟ, ବୋଲେ ତୁ ନନ୍ଦସୁତ
ସଙ୍ଗତେ କରଅଛୁ ଭାବନା । ୨ ।

ଶୁଣି କଣ୍ଠ ବଚନ ସନ୍ଧକ ରେ ହେଉ ଯେ ଥାଏ ଉନ୍ନ, ଧ୍ୟାନେ ଯେସନେ ମୁନ୍ନ
ଯେ ଯେତେ ବୋଲେ ସହେ ମୁଁ ସିନା ରେ । ୩ ।

ନୁହଇ ବେଣ ଜାଣ ମୁହିଁ କରେ ବରଜଇ ଅଞ୍ଜନ, କଳା ବୋଲିଣ ପୁଣ
ଯେଉଁ ଦନୁ ଶୁଣିଲି
ସୋମନାଥ ବୀରେନ୍ଦ୍ର ବଦନ୍ତି ରେ କହେ ସଖୀରେ ସଖୀ
ସେ ନଟବର ଦେଖି ଲଗିଲେ ନ ଗ୍ରୁଡ଼ବ ନବୀନା ରେ । ୪ ।



## ଶ୍ରୀକୃଷ୍ଣଙ୍କ ବିରହାନୁଚିନ୍ତା

ରସରଙ୍ଗୀ ଭାବ
କୃପା ହେଲେ ସସ ହେବ ରେ । ପଦ ।

ବହୁଅଛୁ କେଡ଼େ ରୋଷ ସଖୀ କେବେ ସନମତ ନାହିଁ
ତାର ପାଇଁ ମୋର ଦେହ ଯିବ ରେ । ୧ ।
ଆଣି ସେ ଯାଉଥାଏ ପାଣି କହେ ମଧୁର ବାଣୀ
ମୋର ବାଣୀ ନ ଶୁଣି ଯିବ ରେ । ୨ ।
ଜପ ହେଲିଣି ତାର ନାମ ଦୟା ନ କର ହେଲ ବାମ
ଜାଣ କାମ ଏବେ ଶଙ୍କାଇବ ରେ । ୩ ।
ଶ୍ୟାମଘନ ବରହେ କହ ସୋମନାଥ ସିଂହ ନୃପ ଧ୍ୟାୟି
ବଂଶୀ ଆଣ ମନକୁ ମୋ ଯିବ ରେ । ୪ ।



Digitized by srujanika@gmail.com

## ଗୋପୀମାନଙ୍କ କୃଷ୍ଣପ୍ରୀତି

( ରାଗ – ଦକ୍ଷିଣଶୋଡ଼ୀ )

ଶ୍ୟାମସୁନ୍ଦର ରୂପ କାମ
ତା' ବିନା କାହିଁ ନାହିଁ ଅନୁପମ । ପଦ ।

ସୁନ୍ଦର ମୁଖ ତାର ଭଲ, ଗୃହିଁ ଆସ୍ୱଭ ଯୁବତୀ କୁଳ ନ ରହିଲା,
ଯେତେ ହୋଇଲେ ଦମ୍ଭ କରିବଏ ଅଦମ୍ଭ
କାଖରୁ ଖସି କୁମ୍ଭ, ପଡ଼ଇ ଦେଖିଲେ ଶ୍ୟାମ । ୧ ।
ଠାରଣ ବନ୍ଧ କରେ ଯୁବା କହନ୍ତେ ଭାଷା ସୁଧା ବରଷିଲା କି ଅବା
ବିମ୍ବ ଅଧରେ ହସ ବିମ୍ବାଧରୀ ହରଷ
ଶୁଣି ହୁଅନ୍ତି ତୋଷ, ବୀରବର ଜୀବ ଶ୍ୟାମ । ୨ ।
ରସିକ ବର ଜାଣ ସେହୁ ରସବତୀକ ରସିଲା ବେଳେ ସେ ଯେ ରାହୁ
ଚନ୍ଦ୍ରମୁଖୀ କାତର ହୋଇଣ ଥରଥର
ବ୍ରଜ ନାଗରୀ ବର ରସରେ ରସନ୍ତି ଶ୍ୟାମ । ୩ ।
ମୋହନ ନାମ ମୋହିବା ରେ, ବିରହ ବଂଶୀ ଶୋଭା ଦିଶଇ ତାର କରେ
ବାଇବ ଯେବେ ଧୀରେ ରହି ନୋହିବ ଘରେ
ଥରି ଥରି କାତରେ ବିଷମ କରେ ଶ୍ୟାମ । ୪ ।
ଶ୍ରୀ ସୋମନାଥ ବୀରବର ଭଣନ୍ତି ଗୀତେ ଚତୁରୀ ହୁଅନ୍ତି ଆତୁର
ହେଉ ପଛେ ଅକୀର୍ତ୍ତି କେ ସହେ କାମ ଖିନ୍ଥ
ଦହି ହେଉଛି ମତି, ନବୀନ ସୁନ୍ଦର ଶ୍ୟାମ । ୫ ।



## ବଂଶୀଧ୍ୱନିଶ୍ରବଣେ ଗୋପୀମାନଙ୍କର ବିହ୍ୱଳତା

( ରାଗ – କେଦାର )

ନୀପମୂଳେ ବ୍ରଜେ ନଟବର ହେ, ମୋହନ ମୁରଲୀ ଧରି କର ହେ । ପଦ ।

ଚନ୍ଦ୍ରରେ ବିସ୍ତରି ପ୍ରଭୁ କରିବାର ହାସ
ଅଧରେ ବଇଁଶୀ ଦେଇ ସୁରସରେ ଘୋଷ ଯେ
ଡାକନ୍ତି ସେ ନାମ ଧରି ଆସ ସହଚରୀ
ଶୁଣିଣ ଉତ୍ସୁକ ହେଲେ ବରଜ ନାଗରୀ ଯେ
କେକା ହରପୁରରେ, ଆପଣା ବିପୁରେ, ପତିସୁତ କୋଳରେ, ଧରଣ ପଲଙ୍କରେ
ପକାଇ ଧାମନ୍ତି ବାଳୀ ହୋଇକରି ଥରଥର । ୧ ।

Digitized by srujanika@gmail.com

କେବଣ ଚତୁରୀ ନାରୀ ବେଣୀ ସମ୍ଭାଳି
କାହାର ପିନ୍ଧିଲା ବାସ ପଡ଼େ ଅନ୍ତରାଳ ଯେ
କେହୁ ଧରା ପରେ ଧୀର ହୋଇ କରି ନର ହେ
ମଦନ ମାଦକେ କାର କର୍ମ ଥାଏ କାଯ୍ଯ ଯେ
ଚନ୍ଦ୍ରମୁଖୀ ହରଷ ହୋଇଣ ହସହସ, କେ ବୋଲଇ ଗୋ ଆସ ଯିବା ଶ୍ରୀକୃଷ୍ଣ ପାଶ
ଗଜଗମନା ଗମନ୍ତି ଧରି ଆନନ୍ଦ ମନର । ୨ ।

ନୂତନ ବୟସୀ ସର୍ବେ ମଉଗର୍ବେ ଭରେ
ନ ମାନନ୍ତି ଗୁରୁଜନ ସେ ସ୍ମର କାତର ଯେ
ନ ଡରଣ ଘୋରବନ, ନଶାରେ ଗମନ
କରେ ଧରିଛନ୍ତି ତୋଳି ନାନା ପୁଷ୍ପମାନ ଯେ
ଫୁଲ ଫୁଲ ବୋଲନ୍ତି, ଆଗେ କେହୁ ଧାମନ୍ତି,
କା କର କେ ଧରନ୍ତି ଶୁଣ ଶୁଣ ଡାକନ୍ତି
କେତେ ରଙ୍ଗ ଜାଣେ ଶ୍ୟାମ ଯୁବତୀ କୁଳକୁ ମାର । ୩ ।

ଏମନ୍ତେ ବ୍ରଜ ଯୁବତୀ ବ୍ରଜରାଜ ପାଶେ,
ନାନା କଉତୁକେ ପୁଷ୍ପ ମଣ୍ଡନ୍ତି ହରଷେ ଯେ
ଜାଣନ୍ତି ତାହାଙ୍କ ମନ ହରଷ ହୋଇଣ
କୁଞ୍ଜବନେ ନାନା କେଳି କଲେ ଶ୍ୟାମଘନ ଯେ
ଜାଣନ୍ତି ମୋହ ସେହୁ, ଯାକୁ ଯେମନ୍ତ ଯେହୁ
ସେ ଭାବ କେହି କହୁ ନ ଥିବେ କାହିଁ ଆଉ
ଭାଷେ ସୋମନାଥ ସିଂହ ମର୍ଦ୍ଦରାଜ ବୀରବର । ୪ ।



## ରାଧାଙ୍କ ପ୍ରତି ଶ୍ରୀକୃଷ୍ଣଙ୍କ ଚାଟୂକ୍ତି

ସ୍ମରଣରେ ଗଲି ସରି
ଶରଦ ବିଧୁବଦନା । ଘୋଷା ।
ସଜନୀ ଅନୁରାଗରେ
ରଖ କରି ତୋ ପାଶରେ
ମଦନ ଶର କୁନ୍ତରେ
ଭଜୁରେ ଚମ୍ପା ବରନା । ୧ ।

Digitized by srujanika@gmail.com

ତୋ ଅଙ୍ଗୀକାର କାରଣ
ମୋତେ ଏହା ଅଟେ ଜାଣ
ପୀରତି ବଡ଼ ଯତନ
କର ରେ କୁନ୍ଦରଦନା । ୨ ।
ସ୍ନେହକୁ କର ଭରସା
ଗୃତକ ପରାଏ ଆଶା
ରସକ୍ଷଣେ ମୀନଦୃଶା
ଯାଉ ଏ ମୋର ବେଦନା । ୩ ।
ରସ ରଙ୍ଗୀ ଅ.ସ ପା:ଶ
ନାନା କଉତୁକେ ରସ
ଗରବ ହେଉ ତୋ ନାଶ
ଆହ୍ୱାରେ ପିକବଚନା । ୪ ।
ବରଜ ସୁନ୍ଦର ବାଣୀ
ଶୁଣି ହସେ ପ୍ରାଣମଣି
ସୋମନାଥ ନୃପ ବାଣୀ
ଶ୍ରୀପନ୍ତ ରସେ ନବୀନା । ୫ ।



## ଶ୍ରୀକୃଷ୍ଣଙ୍କ ପ୍ରତି ସଖୀ

ଆହେ ଶ୍ୟାମସୁନ୍ଦର,
ଗଜଗମନା ହେଲଣି କାମେ ଆତୁର । ପଦ ।

କ ଅବା କଲ ଯନ୍ତ୍ରର ତୁମ୍ଭେ ତାକୁ, ମଦାଲସୀ ଅସ୍ଥ ନୁହେଁ ବିଷମ ହେଉଛି ତାକୁ
ରସିଗଲଣି ରସିକା ତୋର ଭାବକୁ । ୧ ।

ସଦନେ ନ ରହେ କ୍ଷଣେ ଭ୍ରମୁଅଛି କମ୍ପୁଛି ଗାତ୍ର ତାହାର ସ୍ମର ତାପ ହିଁ ବଢୁଛି
ନବୀନା ନୟନେ ତ ରହିଶୁଛି । ୨ ।

ଲାଗୁ ନାହିଁ କିଛି ସୁଖବାସ ବେଶ ସନ୍ଦେହ ପାଇବା ଯେ ଅଛି ମାନସ
ବିମ୍ବାଧରୀ ଗୁଣ ଗୁଣି ହେଉଛି ନାଶ । ୩ ।

ପଡ଼ୁଛି ସଙ୍କଟ ଏବେ କ କହିବ ବଗୁର ବଗୁର କରି ଦାନକୁ ଦାନକୁ ଭାବ
ଲଭିବାକୁ ରସରଙ୍ଗୀ ସେବେ ରହିବ । ୪ ।



Digitized by srujanika@gmail.com

ସୋମନାଥ ଖାରବର୍ ଗ୍ରସେ ରସେ
ଦୂତୀବାଣୀ ଶୁଣି ବେନୁପାଣି ହରଷେ ରସେ
ବୋଲନ୍ତି ଅନୁକ୍ଷଣେ ରେ ଅଛୁ ପାଶେ । ୫ ।



## ଶ୍ରୀକୃଷ୍ଣଙ୍କ ଚାଟୁ

ପଙ୍କଜନୟନା ଫେର ଅନା ରେ
ମୁଁ ତୋହର ସିନା । ପଦ ।

ଦେଖାଅ ଭ୍ରୂଭଙ୍ଗୀ ଆରେ କନକ ଅଙ୍ଗୀ
ମଦନ ଶର ଗାଶମା ପକା ତୁହି ଖଞ୍ଜି ରେ । ୧ ।
ଧନର ସ୍ନେହ ସାର ସଂସାରରେ ମୋହର
ରଖ ପୀରତରେ କିଣି ରସାଇ ପାସର ରେ । ୨ ।
ନବୀନା ବସ୍ତ୍ରରନା ଆନ କିଛୁ ଧରନା
ନ କର କରୁଣା ଊଣା କନ୍ଦର୍ପଗମନାରେ । ୩ ।
କ୍ଷୀଣମଧ୍ୟନା କ୍ଷୀଣ— ପଦରେ ତୁହା ଶାରଣ
ଚିତ୍ତକୁ କର ଧରଣ ସେବାଥିବ ନିତରେ । ୪ ।
ଶୁଣି ମୋହନ ବାଣୀ ହସି ରମଣୀମଣି
ସୋମନାଥ ଖାରଦର ଏ ରସରେ ଭଣି ରେ । ୫ ।

## ଶ୍ରୀକୃଷ୍ଣଙ୍କ ପ୍ରତି ଗୋପୀ

କେତେ ହଟ ଜାଣୁ କାହିଁ ନୋହିବ
ନାଟ ଲଗାଇ କାମଦେବ । ୦ ।
ଆମ୍ଭେ ତ ଅବଳା ଖେଳୁଥାଏ ତୋଳା
ଏ ଛବ ନ ଦେଖା ଚଉ ବଳବ । ୧ ।
ନ ଲଗାଅ ପ୍ରୀତ ନୋହୁ ଏ ଅକୀର୍ତ୍ତି
ରସେ ରସିଲେ କି ଗୁଡ଼ ହୋଇବ । ୨ ।
ହେ ରସିକ ନାହା କହୁଅଛୁ ଯାହା
ଜଞ୍ଜାଳ ନ କର ଦମ୍ଭ ଭାଗିବ । ୩ ।

Digitized by srujanika@gmail.com

ଥରିଲଣି ଦେହ ଲାଗୁଅଛୁ ମୋହ
ଯାଅ ଯାଅ ଏହା କେହୁ ସହିବ । ୪ ।
ସୋମନାଥ ବୀର- ବର ନୃପବର
ଭଣିଲୁ ଶୁଣ କି ହେବ ତା ଭାବ । ୫ ।



## ବିରହିଣୀ ଶ୍ରୀରାଧା

ସଙ୍ଗାତ ରେ, ଚନ୍ଦ୍ରା ହେଲା ଦେଖି ଘନ
ଆଗତ ନାହିଁ ମୋ କାନ୍ତ, କି ବୁଦ୍ଧି କରିବ କହ ତ । ପଦ ।

ଗଗନେ ବିଜୁ ଚମକ, ଘଡ଼ଘଡ଼ିର ଧମକ
ସହି ନୋହେ, ଡାହୁକ ଡାକ
ଶିଖରେ ଶିଖୀ ଉନ୍ମତ୍ତ, ପୁଚ୍ଛ ଟେକି କରେ ନୃତ୍ୟ
ମନମଥ ଶରକୁ ମୁହିଁ ନ ପାରେ ସହି ।
କହ ସଖୀ ଆରେ ଥିଲେ ଚୋର ବଗୁର,
ନାହିଁ ମୋର କେହି କାନ୍ତ ବିନା ସଂସାର
ବୁଦ୍ଧି ନ ଦିଶଇ ହେଉଅଛୁ ଆତୁର,
କହୁଅଛୁ ସହି କର ତୁ ପ୍ରତିକାର । ୧ ।

ହେଲଣି ବହୁତ ଦିନ, ରହିଲେ ଜୀବଜୀବନ
ନଇଲେ କମ୍ପାଇ ସଦନ, ଭାଷନ୍ତୁ ଗୃହ୍ଣୁ ବଚନ ଗୋ
କହନ୍ତୁ ମୋ ଦୁଃଖମାନ, ବଞ୍ଚନ୍ତୁ ଏ ଦୁର୍ଦ୍ଦିନ ଦିନ
ପରାଣ ଧନ ।
ଫୁଟିଲେଣି ଏବେ ଯାଡ଼ି ଯୋଡ଼ି ମାଲତୀ,
ମଲ୍ଲୀ କଳିକାରେ ଦେଖ ଅଳି କେଳି କରନ୍ତି
ବେଳକୁ ବେଳକୁ ଏବେ ଜଳ ବୃଷ୍ଟି କଲା ଣି,
ଇନ୍ଦ୍ରଧନୁ ନୀଳବର୍ଣ୍ଣ ପ୍ରଭା ପ୍ରକାଶିଲା ଣି । ୨ ।

ହୋଇଲେ ନଦୀ ପ୍ରବଳ ପୋର ନାଶ କଲେ କୋଳ
ମକମକ ଭେକ ଚହଲ
ବିରହୀ ହୃଦ କାତର ମାରେ କରକା ପଥର
ବଞ୍ଚିବ କି କେହି ଏଥର,

Digitized by srujanika@gmail.com

ମାର ନିଷ୍ଠୁର ରହିବନ୍ତ କେହୁ ପଡ଼ି ତାର ମୁଖର,
ନାହିଁ ନାହିଁ ସହି ଆରେ କାନ୍ତ ମୋର ପାଖର
ତହିଁପାଇଁ ନତ୍ୟେ ମୁହିଁ କରୁଥାଇ ବସ୍ତୁର,
ପାଇଲେ ତୁ ମତେ ରଖ ବେଗେ ପେଶ ତୁ ସ୍ବର । ୩ ।

ପୋଡ଼ୁ ଏ ଯୁବା ବୟସ, ଏ କାଳେ ନାଥ ବିଦେଶ
ରହିଥିବେ କେବଣ ଦେଶ
ହଜୁଛି ମୋର ସାହସ, ନ ପାଇ ତାଙ୍କ ସନ୍ଦେଶ
ନିଷ୍ଟେ ମୁହିଁ ଗଲିଟି ନାଶ, କଲେ ନିରାଶ,
ଧିକ ହେଉ ମୋର ବାସ ବେଶ ଭୋଜନ,
ଏ ନବ ବୟସେ ଯଦି ହୋଇଲିନ କଷଣ
ମଦନକୁ ଡର ଯେବେ ହରାଇବ ପରାଣ,
ଧନ ଥାଉ ଥାଉ ଯେବେ ହୋଇଲିତ ଏ ମନ । ୪ ।

ଏତେ ଭଳି ମନ୍ଦ ଗୁହିଁ, ନେତ୍ରୁ ଲୋତକ ପକାଇ
ମୁଖରେ ନିଃଶ୍ୱାସ ବହଇ
କୃପା କଲେ ମହେଶ୍ୱର ଆସନ୍ତେ ମୋହ ପାଶର
ନାଶ ଯାନ୍ତା ଶିଖିଶପର, ପ୍ରାଣ ଈଶ୍ୱର ।
ବସାଇଣ ଅଙ୍କେ ଚୁମ୍ବନ ମୁଁ ଦିଅନ୍ତି,
ବିନୋଦ ଭାବରେ ମୁହିଁ ତାଙ୍କ ମନ ମୋହନ୍ତି
ସେ * ବ୍ରଜନାଗର ପାଶୁଁ ଆଉ ଦୂର ନୁହନ୍ତି,
ସୋମନାଥ ଖାରବର ଜଗଦ୍ଦେବ କହନ୍ତି । ୫ ।



## ବାସକସଜ୍ଜା

( ରାଗିଣୀ—ଭଟିଆରି । ତାଳ—ଏକତାଳି )

ନାହା ରହିଲେ କାହା ସଦନେ ଗୋ
ମୋର ଯାହା ହେଉଛି ଦେହ ମଦନେ ଗୋ
କା' ଆଗେ କହିବଇଁ ସାହା ତ କେହି ନାହିଁ
ଆହା ବୋଲନ୍ତି ଚନ୍ଦ୍ରବଦନେ ଗୋ । ୧ ।

* ବ୍ରଜନାଗର—କୃଷ୍ଣ ।

Digitized by srujanika@gmail.com

ଆସିବେ ବୋଲି * ନନ୍ଦକୁମର ଗୋ,
ବେଗେ ମଣ୍ଡନ କଲି କେଳିମନ୍ଦିର ଗୋ ।
ନାନା କୁସୁମେ ଆଳି—
କରେ ଗୁନ୍ଥିଲି ମାଳି,
ଗୋଳି ରଖିଲି ଚୂଆ ଚନ୍ଦନ ଗୋ । ୨ ।

ବାସକ ଶଯ୍ୟା କଲି ସଦନେ ଗୋ
ସନ୍ଧ୍ୟ ନଶି ବଞ୍ଚିଲି ଘୋର କଦନେ ଗୋ ।
ରମଣୀ ଶିରୋମଣି,
କେଉଁ ମାନସ କଣି,
ନେଲା କଟି କିଙ୍କିଣୀ ବାଦନେ ଗୋ । ୩ ।

ସୋମନାଥ ଦ୍ୱାରବର ବଦନ୍ତି ଗୋ
କୁଶଳେ ଅନୁକୂଳ ଭୂପତି ଗୋ
ବୋଲନ୍ତି ରାଜସୁତା,
ହୋଇଣ ଉତ୍କଣ୍ଠିତା,
ମତେ ନବେଶି କେଳି ସଦନ ଗୋ । ୪ ।



* ନନ୍ଦକୁମର—କୃଷ୍ଣ ।

Digitized by srujanika@gmail.com

## ଲୌକିକ ପ୍ରଣୟ ଗୀତିକା

### ବିମୁଗ୍ଧ ପ୍ରଣୟୀ

ଜୀବନ ଗତି ସଜନି
କମ୍ପାଇ ଅଧର ମଧୁର ହସଇ, ମଲ୍ଲୀଫୁଲ ରେ
ମଦନଜିତା ରମଣୀ । ୧ ।

ନ ରଖି ହସେ ଆସ୍ୱତି
ଧରି ପରେ ଧୀର ନୁହଇ ଚିତ୍ତ ରେ, ମଲ୍ଲୀଫୁଲ ରେ
ବନ୍ଧୁଥାଇ ମନମଥ ରେ । ୨ ।

କୁରଙ୍ଗୀ ନୟନୀ ସ୍ନେହ
ଖାଲୁଖାଲୁ କେବେ ହନ ନ ଖରଇ, ମଲ୍ଲୀଫୁଲ ରେ
ଘଡ଼ି ଘଡ଼ି କରେ ମୋହ । ୩ ।

ତନୁ କରେ ଥର ଥର
କେତେ ଯତନରେ ସୁରତି ହସଇ, ମଲ୍ଲୀଫୁଲ ରେ
ସାର ପୀରତି ତାହାର । ୪ ।

ସୋମନାଥ ଖାରବୀର
ସିଂହ ଭାଷୁଥାନ୍ତି ନୁହ ବିମନ ରେ, ମଲ୍ଲୀଫୁଲ ରେ
ଜୀବ ଥିବ ଯେତେ କାଳ ରେ । ୫ ।



Digitized by srujanika@gmail.com

## ନାୟକର ଚାଟୁ

ତୋ ସଙ୍ଗ ନ ପାଇ ମୁହିଁ ଦୁଃଖୀରେ, କମଳମୁଖୀ !
ମାନେ ନ ବସ ମୋତେ ଦେଖି ରେ । ଘୋଷା ।

ନଟର ମହ୍ଲିସହ୍ଲି ! ଘେନ କହୁଛୁ ମୁହିଁ,
କାମ ଭୟରେ ଯିବ ଶଙ୍କି ରେ । ୧ ।
ବିବେକୀ ତୋର ପଣ, ନାହିଁ ଏ ଉନପୁଷ୍ପ,
ଜନେ ନ ଥିଲ ଏକା ଦେଖି ରେ । ୨ ।
ସେ ଶୋଭା ଦେଖି ଲୋଭା, ନୋହିବେ କଉଁ ଯୁବା,
ଆଖି ରହିବ ତାଙ୍କ ଲଖି ରେ । ୩ ।
ଜବା ଅଧରେ ତୋର, ପୂରିଅଛୁ ମଧୁର,
ପିଆଇ କର ମୋତେ ସୁଖୀ ରେ । ୪ ।
ପ୍ରିୟ ବଚନ ଶୁଣି, ହସି ଅଙ୍କକୁ ଆଣି,
ସୋମନାଥ ନୃପତି ଏହା ଲେଖି ରେ । ୫ ।



## ନାୟକର ଚାଟୁ

ଚନ୍ଦ୍ରମୀ ବନ୍ଦେ ଅନା ରେ
ମୁଁ ତ ଅଟଇ ତୋହର କଣା ରେ

ଚନ୍ଦ୍ର ଆନନୀ, ପୀୟୂଷ ବାଣୀ
ମଉନ ନୋହି ବାରେ ଶୁଣା ରେ । ୧ ।
ହେ ଗଜଗତି ଏ କି ତୋ ସ୍ଥିତି
ଧରିଛୁ କପାଁ ମନେ ଘୃଣା ରେ । ୨ ।
ଛାଡ଼ ତୋ ମାନ କହୁଛୁ ଧନ
ଏହା ନ ଥିଲା ତୋର ଜଣା ରେ । ୩ ।
ହୃଦ ପଥର କଲୁ ଏଥର
କାମ ଦହିବ ନଷ୍ଟେ ସିନା ରେ । ୪ ।
ଅନୁକୂଳର ନୃପତିବର
ତୋଷିଲ ପିକବଚନା ରେ । ୫ ।



Digitized by srujanika@gmail.com

## ମାନବତୀ ନାୟିକା ପ୍ରତି ନାୟକର ଚାଟୂକ୍ତି

ମୋହୋ ଜୀବନ । ଘୋଷା ।

ଏଣୀନୟନା ତୋ ମାନ ଦେଖିକରି ମୋର ବୁଡ଼ୁଛି ଜ୍ଞାନ ରେ
ଏକଥା ମନରେ ଘେନ ରେ । ୧ ।

କେ କହି କଲା ବିମନ ତୁ ଅଟୁ ମୋର ପରାଣ ଧନ ରେ
ବିବେକୀର କିଏ ମାନ ରେ । ୨ ।

ଶଶୀଙ୍କ ଜିଣି ଆନନ ଝେକିବାରେ ମୋତେ ଚାହିଁ ନୟନ ରେ
ତୋ ବିନା ନ ଦିଶେ ଆନ ରେ । ୩ ।

ସେବା କରି ତ୍ରିଲୋଚନ ବର ଦେଇଥିଲେ ଉମାରମଣ ରେ
ତୁ କିମ୍ପା ହେଉ ବିମନ ରେ । ୪ ।

କାନ୍ତ ବାଣୀ ବାଳୀ ଶୁଣି ମନ୍ଦେ ହସି କୋଳେ ବସାଏ ଆଣି ରେ
ସୋମନାଥ ରାଜା ଭଣି ରେ । ୫ ।



## ନାୟକର ସ୍ମୃତିପଥେ ରତିଲମ୍ପଟୀ ନାୟିକା

କରିଗମନା ଦନ୍ତୀ ପଲଙ୍କରେ
ବସାଇ ଅଙ୍କେ ଚୁମ୍ବ ଦିଏ ଧୀରେ । ପଦ ।

ଖସାଇ ତାର ବାସ, ହୁଅଇ ହସ ହସ
ବିମ୍ବାଧରୀ ମଦନ ମାଦକ ରେ । ୧ ।

ହୃଦେ ହୃଦ ଲଗାଇ ଭିଡ଼ି ଯେ ଥାଏ ସେହି
ଜଡ଼ି ଯେ ଯାଉଥାଏ ସୁରତ ରେ । ୨ ।

ତୀକ୍ଷ୍ଣ କରଜ ନେଇ ଚଳାଇ ଦିଏ ଦେହି
ଚମକି କରି ଇଙ୍ଗି କରେ । ୩ ।

ନବ ନାଗରୀ ସହି, ଆସ୍ତୁତି ନ ରଖଇ
ତା ପ୍ରୀତି ରସ କିଣି ରହିପାରେ । ୪ ।

ଶ୍ରୀ ସୋମନାଥ ଭଣି, ନୃପତି ଶିରୋମଣି
ମହୀମଣ୍ଡନା ମନ ମୋହିପାରେ । ୫ ।



Digitized by srujanika@gmail.com

## ନାୟକର ଉକ୍ତି

ଆରେ ବନ୍ଧୁ । ଘୋଷା ।

ଦହକ କନକ ଗୋରୀ ଶଶୀମୁଖୀ, ଯୁବତୀ ମାନଙ୍କେ ଯଶ ହେବେ ଦୁଃଖୀ ।୧।
ସୁରପୁର ନାରୀ ତୋତେ ହେବେ ଊଣା, ବିଧାତା ଗଢ଼ିଛି ତୁ ଯେ ଜଗତ୍ତିଣା ।୨।
କେଶରୀ ମଧ୍ୟମା କରି ଗଜଗତି, ତୋତେ ମୁଁ ପାଇଛୁ ସେବ ଉମାପତି ।୩।
ଅଧରେ ଅମୀୟ ତୁ ଯେ ଅଛୁ ରଖି, ମଦନ ଜାଲାରୁ ମୋତେ ରଖ ସଖୀ ।୪।
ପ୍ରିୟବାଣୀ ଶୁଣି ରମା ମନ୍ଦେ ହସି, ସୋମନାଥ ରାଜା ମନ ନେଲ ତୋଷି ।୫।



## ନାୟକର ଉକ୍ତି

ରତିପତି ପ୍ରମାଦ, ଶୁଣି ଘନର ନାଦ । ଘୋଷା ।
କନକ ବରଣୀ ରୂପ ଦେଖି ଲଭିଲି ସୁଖ
ତୋ କଥା (୧) ଆଲଙ୍ଘିତ
ମୋତେ ହୋଇଲା ନବୀନା । ୧ ।
ତାରପତିବଦନ ଟେକ ମୁହିଁ ମୋ ଧନ
ହୋଇବ କଣା ଜନ
ହସି ମୁହାଁ ନବୀନା । ୨ ।
ଶୁଣିଣ ସେ ଚତୁରୀ ମୁଖ କଲା ମୁରୁରୀ
ଲାବଣ୍ୟେ ରତିକର
ବନ୍ଦେ ମୁହେଁ ନବୀନା । ୩ ।
କରୀଗମନା ମୋର ବସ ଆସି ମୋ କୋଳ
ଧରୁଛି ତୋର କର
ରତି ଦିଅ ନବୀନା । ୪ ।
ସୋମନାଥ ରାଜନ ପ୍ରେମେ ହୋଇ ମଗନ
କୃଷ୍ଣ ଚରଣେ ମନ
ରହୁ ମୋର ନବୀନା । ୫ ।



(୧) ଆଲଙ୍ଘିତ—ଅଲଙ୍ଘନୀୟ

Digitized by srujanika@gmail.com

## ନାୟକର ଗୂଢ଼ୋକ୍ତି

ଆରେ ହରିଣନୟନା ଅଳପ ଅନା ରେ । ପଦ ।

ଦେଖିକରି ମୋତେ ଧନ ପୋତିଲୁ କମ୍ପା ବଦନ
ଛାଡ଼ ମନରୁ ବିମନ ତୁ ତ ବିବେକୀ ରତନ ।
ରତିପତି ଦେଖି ଶର ବିନ୍ଧିବ ସିନା ରେ । ପଦ ।
ଗଜଗତି, ମୋତିଦନ୍ତୀ ଯେନ ମୋହୋର ବିନତି
ନ ରଖିଲେ କଷ୍ଟେ ଭାସିଗଲି ମୁଁ ସିନା ରେ । ୧ ।
କେଶରୀ-ମଧ୍ୟମା ରାମା ଦୋଷ ଥିଲେ କର କ୍ଷମା
ମୁଁ ତୋହର ଅଟେ କିଣା, ହୀନବସନା ରେ । ୨ ।
ନ ଦେଖିଲେ ତୋତେ ଧନ ଉଚ୍ଛନ୍ନ ହୁଅଇ ମନ
ନ ସରଇ କଣ୍ଠଧ୍ୱନ ପିକବଚନା ରେ । ୩ ।
ପ୍ରବେଶ ହେଲେ ମୁଁ ଧନ ହସି କରୁ ଆଲିଙ୍ଗନ
ନ ସହି କେ ତୋତେ ଆଜ, କରୁଛୁ ମନା ରେ । ୪ ।
ସୋମନାଥ ନର-ଇନ୍ଦ୍ର ମହୀପତି କୁଳଚନ୍ଦ୍ର
ଗୂଢ଼ କହି ତୋଷକଲେ, ଚମ୍ପାବରନା ରେ । ୫ ।



## ନାୟକର ଭାବନା

ରମଣୀ ସୁରତି ସ୍ନେହ ମୋ ମନକୁ ଗଲା ରେ । ଘୋଷା ।

ରହି ନ ପାରଇ ଘରେ ଋଷିମୋହନୀ ପ୍ରୀତିରେ
ରସାମଣ୍ଡନା ସୁରସା କିଣା ପରି କଲା ରେ ।୧।
ରାଜୀବନେତ୍ରୀ ନବୀନା ରସେ ଲୁହଇ ବିମନା
ରଙ୍ଗେ କରୀନ୍ଦ୍ରଗମନା ତନୁକୁ ବହିଲା ରେ । ୨ ।
ରାମାକୁ ନୋହେ ପାଶୋର ରସାଳସା ହେମଗୋରୀ
ରସନିଧି ବିନା ନେନେ ଆନ ନ ଦେଖିଲା ରେ । ୩ ।
ରଙ୍ଗିଣୀ ମୋ ହୃଦହାର ରସ ଅନୁନୟ ଗିର
ରାଜା ସୋମନାଥ ବୋଲେ ଛାଡ଼ି ତ ନୋହିଲା ରେ । ୪ ।



Digitized by srujanika@gmail.com

## ନାୟିକା ରୂପ ପ୍ରଶଂସା

ଧନ ମୋର ରସବନ୍ତି, ତନୁ ଥର ଥର କରି ଦେଲୁ ରେ । ଘୋଷା ।

କରି ଗଢ଼ କରଣୀନେତ୍ରୀ, ସେ ଶୋଭାରେ ରଖିଲୁ ମଢ଼ ।
ଅରୁଣ ଅଧରୀ ଅଳପ ହସିଲୁ ଦେଖି ଚିତ୍ତ ମୋର ଜଡ଼ିଗଲା ରେ । ୧ ।
ଶିରେ ଶୋଭା ଅମୂଲ୍ୟ ମଣି, ଦିନମଣି ତେଜକୁ ଜିଣି ।
ନାସାର ବସଣି ଝଟଝଟ ଦିଶିବାରୁ ସିନା ବଡ଼ ଉକାଇଲୁ ରେ । ୨ ।
ପାରିବାରୁ ଯତନେ ବେଣୀ ଖୋସିଥିଲୁ ଝରିଏ ପୁଣି ।
ବିଷମ କରଇ ଦୋହଲ ରେ ପୁଣି, ଅସ୍ଥକରି କ୍ଷଣେ ନ ରଖିଲୁ ରେ । ୩ ।
କ୍ଷୀଣ କଟି ଉରଜ ଭାରି, ଅଟେ ସେହୁ ନବନାଗରୀ ।
ନୀଳଝୀନ ବାସେ ପିନ୍ଧଣ ସେ କାନ୍ତୁ ଫୁଟି ତନୁ ଝଟ ଝଟ କଲା ରେ । ୪ ।



## ନାୟକର ଚିଟ୍ଠି

ରମଣୀମଣି ତୁ ଅଟୁ ମିତଣୀ, ଭାଷା ହେଲେ କୋକିଲଠାରୁ ଜିଣି । ଘୋଷା ।

ବିଷମ କରଇ ବାଙ୍କ ଗୃହାଣି, ପଢ଼ିଲେ ହୃଦୟ ହୁଅଇ ହାଣି । ୧ ।
ଅଧିକେ ଚିତ୍ତ ହୁଅଇ ଅସ୍ଥିର, ରସବନ୍ତି ଶୋଭି କରେ କାତର । ୨ ।
ରସିକା ରତନ ବିବେକୀ ହୋଇ, ତୋ ପରି ଆଉ କାହିଁ ନ ଦେଖଇ । ୩ ।
କରୁଣାରେ ଅରୁଣାଧରୀ, ପଣ ରଖିଥାଅ ସେବକ କରି । ୪ ।
ଶୁଣିଣ ରମଣୀ ହୋଇଲା ତୋଷ, ଭଣେ ସୋମନାଥ ସିଂହ ନରେଶ । ୫ ।



## ରେ ରସବନ୍ଧୁ

( ଚଗ ବୃତ୍ତ )

କାହିଁକି କରୁଛୁ ରୋଷ
ଯାହା ତୁ ବୋଲିବୁ କରିବି ତୋଷ,
ରେ ରସବନ୍ଧୁ, ମୁଁ ତୋର ଅଟଇ ଦାସ । ୧ ।
ପୀରତି ବଡ଼ ଯତନ
ପୀରତିରେ ଏବେ ବଳିଲା ମନ ରେ
ରେ ରସବନ୍ଧୁ, ଏ କଥା ଚିତ୍ତରେ ଘେନ । ୨ ।

Digitized by srujanika@gmail.com

ଘନ କଲା ବଡ଼ ଡାକ
ଶୁଣିକରି ହୃଦେ ଚମକ ପଡ଼ିଲା
ଜୀବଧନ ରେ, ହେଉଥିଲି ମୁଁ ସୁବେଶ । ୩ ।
କୁମ୍ଭ ଧରି ଯାଉଥିଲି
କଳା ପୁରୁଷକୁ ଦେଖିଲି କ୍ଷଣି ରେ
ରେ ରସବନ୍ଧୁ, ଜଳରେ ପକାଇଦେଲି । ୪ ।
ନ ଯାଇ କେବେ ଗାଧୋଇ
ବସିଥିବ ବୋଲି କଳା କହ୍ନାଇ
ରେ ଜୀବଧନ, ହୃଦ ମୋର ହୁଏ ଦହ୍ନ । ୫ ।
କଳାମେଘୀ ପିନ୍ଧିଥିଲି
ଫୁଟି ଚନ୍ଦ୍ର ତା'ର ଝଟ ଝଟ ଦିଶେ
ରେ ରସବନ୍ଧୁ, କେବେ ମୋ ମନୁ ନ ଗଲା । ୬ ।
ଗୋଷ୍ଠ ହେଉଥିଲା ବେଶ
ଗୋରି ତହିଁ ଯାଇ ହେଲି ପ୍ରବେଶ
ରେ ରସବନ୍ଧୁ, ଦେଖି ବେନି ଚଉ ତୋଷ । ୭ ।
ନାଗର ମୋହନ ହରି
ନାଗ୍ରିଙ୍କି ଘେନିଣ କୁଞ୍ଜେ ବୁଲୁଥାଇ
ରେ ରସବନ୍ଧୁ, ନାନା କଉତୁକ କରି । ୮ ।
କଦମ୍ବ ଫୁଲ ଫୁଟିଲା,
କଦମ୍ବମୂଳଆ ଏବେ ନଇଲା
ରେ ରସବନ୍ଧୁ, ଧନ ହେଜ ନ ସରିଲା । ୯ ।
ଆମ୍ବଗଛ ବଉଳିଲା
ଗୋରିକୁ ଦେଖିଣ ଗୋଷ୍ଠ ଠାରିଲା
ରେ ରସବନ୍ଧୁ, କେବେ ମୋ ମନୁ ନ ଗଲା । ୧୦ ।
ପାକଲା ତାଳ ପଡ଼ିଲା
କାହିଁ ଥିଲା ଗୋରି ପାଖେ ଆସିଲା
ରେ ରସବନ୍ଧୁ, ମଦନ କାଣ୍ଡ ବନ୍ଧିଲା । ୧୧ ।
ଆମ୍ବ ଦିଶଇ ସୁରଙ୍ଗ
ଗୋରିକୁ ଦେଖିଣ ବନ୍ଦେ ଅନଙ୍ଗ
ରେ ରସବନ୍ଧୁ, କେବେ ମୁଁ ପାଇବି ସଙ୍ଗ । ୧୨ ।

Digitized by srujanika@gmail.com

ବସନ୍ତ ପ୍ରବେଶ ହେଲା
ନାଗରର ବର ବେଶ ମୁଁ ଦେଖିଲି
ରେ ରସବନ୍ଧୁ, ଧଇର୍ଯ୍ୟ ସୁଦ୍ଧା ନ ଗଲା । ୧୩ ।

ଗୁନ୍ଥିଲି ଫୁଲ ମାଳତୀ
ନାଗରବରଙ୍କୁ କେ ଆଣିଦେବ
ରେ ରସବନ୍ଧୁ, କରିବ ତା'ର ପୀରତି । ୧୪ ।



## ନାୟକର ବିରହ

(ର—କାମ୍ବୋଦ)

ରସାଏ କି,
ରସାଇ ମୋ ମନ ତୋଷାଏ କି । ଘୋଷା ।

ରସକୁ ତ କଲି ସାହା
ରସ ବିଷେ ହେଲା ଏହା
ରହୁ ନୋହେ ଘରେ ଯାହା । ୧ ।

ରତେ ପ୍ରୀତି କି ରତନ
ରଖିଲା କରି ଯତନ
ରହିଲା ତା'ଠାରେ ମନ । ୨ ।

ରଙ୍ଗେ ଅମୀୟ ଚଖାଇ
ରଙ୍ଗାଧରୁ ଦେଇ ସନ୍ଧ
ରଖି ତ ନ ପାରେ ଦେଖା । ୩ ।

ରସେ ବୀରବର ଲେଖି
ରମଣୀ ମାଗଇ ଦେଖି
ରସିଗଲି ଶୁଣ ସଖୀ । ୪ ।



Digitized by srujanika@gmail.com

## ନାୟକର ଚାଟୂ

ପ୍ରୀତଧନ ଗୁହାଁ ରେ ଶରଧାରେ
କାହିଁକ ଏତେ ବିଷାଦ ଦାସଜନଠାରେ । ଘୋଷା ।

ନଳିନନେତ୍ରୀ ମଳିନ ନ କର ଉଣା ରେ
ହଂସ ଗତ ଛୋଡ଼ ବୀଣା ବାଣୀ କ ଶୁଣା ରେ । ୧ ।

ବମ୍ବାଧରୀ ସୁ-ଅଧରୀ ଅମୀୟ ଚଖା ରେ
ନାହିଁ ଆଉ କରିବାକୁ ତୋ ବିନା ଦେଖା ରେ । ୨ ।

ପ୍ରୀତବତ୍ସଳା ତୁ ମୋର ଗଳାର ହାର ରେ
ଉଣା ହେଲେ ନିନ୍ଦା ହେବ ଜଗତେ ପର ରେ । ୩ ।

ଯୁବତୀ ରତନ ରମା କେତକୀ ଗୋର ରେ
ନୁହେଁ ମୁଁ ଦୋଷୀ ରମଣୀ ଚୂଡ଼ାଉ ଭେଳା ରେ । ୪ ।

ନାଗର ମୋହନୀ ମଞ୍ଜୁ ବାଣୀକ ଭାଷା ରେ
ସୋମନାଥ ବୀରବର ବୋଲେ ଏ ରସେ ରେ । ୫ ।



## ବିରହୀ ଅନୁଚିନ୍ତା

କନ୍ଦରବର ଗତ ସଙ୍ଗେ ମୁଁ ଯେତେବେଳେ
ମାତ ଦବାଗ୍ରତ ପକାଇ ମୋ ଗ୍ରୀବ
ସୁର ସମ୍ପତ୍ତି ତୁଚ୍ଛ ଦିଶଇ ସେତେବେଳେ । ପଦ ।

ନ ରଖେ ଆସ୍ତିବ କାମ ସମରେ ତ
ଯେତେ ସେ ପରବନ୍ଧ ଜାଣଇ
ଭଲ ସେ ଚତୁରୀ ରସିକନୀ ନାରୀ
ନାହିଁ ନ ଥିବ କାହିଁ, ଦେଖି ତ ନାହିଁ ତୋଳେ । ୧ ।

କମ୍ପାଇ ଅଧର ଚଖାଏ ମଧୁର
ଥର ଥରଣ ତନୁ ଭିଡ଼ଇ
ହରଜ ଲଗାଇ କରଜ ଲଗାଇ
ଛନ୍ଦଣ ବେନ ଭୁଜ କମ୍ପାଏ ମୋର ଗଳେ । ୨ ।

Digitized by srujanika@gmail.com

ମନ୍ଦେ ମନ୍ଦେ ହସେ 	ବିପରୀତ ରସେ
ଚୁମ୍ବନ ଦିଅଇ ସେ ଗଣ୍ଡରେ
ଫିଟିଯାଏ କେଶ 	ଲୋଟେ ପୃଷ୍ଠଦେଶ
ବସନ ଦେଉଥାଇ ସେ ବଳେ । ୩ ।
ଭଣେ ସୋମନାଥ 	ମସ୍ତିପତି ନାଥ
କାଳୀଶ କଲେ ପୁଣି ପାଇବ
ଯାସୋର ନ ଯିବ 	ଅନ୍ତର ନୋହିବ
ନିଶି ଦିବସ ଧରି ବସିଥିବି ମୁଁ କୋଳେ । ୪ ।



## ନାୟକର ଚାଟୂକ୍ତି

କୃପାକର ବନ୍ଧୁ ମୁଁ ଅଙ୍କେ ବସିବି । ଘୋଷା ।
କମ୍ବୁ ଛୁ ଗ୍ରୀବ 	ଦେଖି ତୋ ଗଳ
ଉରଜେ ଲାଗି ଚଉ ତୋଷିବି । ୧ ।
ଗୁରୁବ ଶ୍ରୀଦ 	ମାଡଲେ ସ୍ୱାଦ
ମଦନ ଶରକୁ ମୁଁ ନାଶିବି । ୨ ।
ଅଧର ପାନ 	ପିଆଅ ଧନ
ନିଶି ଦିବସ ପାଶେ ରହିବି । ୩ ।
କୁନ୍ଦନ ଗୋରୀ 	ଭାଗ୍ୟ ମୋହରି
ଥିଲେ ତୋ ଉରଜେ ରହିବି । ୪ ।
ଶ୍ରୀ ସୋମନାଥ 	ସୀରଙ୍କ ନାଥ
ବୋଲିନ୍ତୁ ତୋର ନାମ ଘୋଷିବି । ୫ ।



## ସମ୍ଭୋଗ-ଭାବନା

ଆଜ ନିଶି ଭଲ ମୋତେ, ଜାଣ ସିନା । ପଦ ।

ବସାଇ ଅଙ୍କରେ 	କଲି କ ରଙ୍ଗରେ
ଜାଣି ନ ପାରିବ ତା ଅନଙ୍ଗ ସିନା । ୧ ।
କେମନ୍ତେ ଉଲଟ ହୋଇ 	ରହିଲି ଗୋ
ବିପରୀତ ରତି ଯାଚ ଦେଲି ସିନା । ୨ ।

Digitized by srujanika@gmail.com

ମଦନ ମାଦକେ ସେନ୍ତୁ — କମ୍ପିଲି ଗୋ
ଭୁଜରେ ବାନ୍ଧଣ ମୋତେ ରଖେ ସିନା । ୩ ।
ଗେଲାଇ ଗେଲାଇ — ଚୁମ୍ବ ବହିଲା ଗୋ
ଅଧରୁ ଅମୀୟ ଚଖାଇଲା ସିନା । ୪ ।
ସୋମନାଥ ନୃପମଣି — ବଦତି ଗୋ
ତା ଭାବନା କାହିଁ ଦେଖା ନାହିଁ ସିନା । ୫ ।



## ସମ୍ଭୋଗ-ଭାବନା

ମୀନନୟନା ମୋ ମନ ଭଲ ମୋହପାରେ
ଗେଲାଇ ଚୁମ୍ବନ ମାଗିଲି ଥରେ । ପଦ ।

ସ୍ମିତ କହି ଧରେ କର — କରକରଦନା ମୋର
ବଳେ କୋଳେ ଧରି ବସେ ମୋରେ । ୧ ।
କମ୍ପୁଥାଇ ତାର ଅଙ୍ଗ — ବାସ ବେଶ ହୁଏ ଭଙ୍ଗ
ହରଜ ଲଗାଏ ମୋର ଉରେ । ୨ ।
ଭିଡୁଥାଏ କ ଯତନେ — ହସେ ହସେ ମନେ ମନେ
ଅଧର ଲଗାଇ ଅଧରରେ । ୩ ।
ସୋମନାଥ ବୀରବର — ଭାଷନ୍ତି ତା ପ୍ରୀତି ସାର
ପାଦ ଛନ୍ଦ ବିପରୀତ କରେ । ୪ ।



## ପରକୀୟା ପ୍ରତି ଆସକ୍ତି

ତରତର କରାଇ ବନ୍ଧୁ
ଥରାଇ ମୋ ତନୁ, ଗୃହିଁ ଗଲା ରେ । ଘୋଷା ।

ସ୍ଥିର କରି ନ ଦେଲା ରଖି
ଧୀର ଗତି ଚନ୍ଦ୍ରମାମୁଖୀ
ଅସ୍ତ୍ର ନ କରାଇ ମଦନ ବିଶିଖେ
ମରମକୁ ମୋର ଦହିଦେଲା ରେ । ୧ ।

Digitized by srujanika@gmail.com

ଦରହାସୀ କୁରଙ୍ଗନେତ୍ରୀ
ଦାହକର କନକଗାତ୍ରୀ
ଦେଖାଇ ଭଙ୍ଗୀ କ ପୀରତି ନ ଦେଇ
ହୃଦେ ମାର କାଢ଼ି ପ୍ରାଣ ନେଲା ରେ । ୨ ।
ଧରା ମଣ୍ଡୁଥିଲା ତା ଶୋଭା
ଧୈର୍ଯ୍ୟ ହାର ହୋଇଲି ଲୋଭା
ଧନ ପର ଆଉ ସଂସାରେ ନ ଥିବ
ତା ପେନ ମୋ ତନୁ ଖିନ୍ନ ହେଲା ରେ । ୩ ।
ନୟନାକୁ ନୁହେ ମୂରୁଚ୍ଛୁ
ନ ଦିଶଇ ତା ବନା କଚ୍ଛୁ
ନରପତି ସିଂହ ସୋମନାଥ ଭଣେ
ହନେ ମୋ ପାଶକୁ ନ ଆସିଲା ରେ । ୪ ।



## ନାୟକର ଅଭିଳାଷ

ଅରୁଣ ଅଧର ପାଶେ ରସିବାକୁ ମିତ
ହେଉଥାଏ ଅନୁକ୍ଷଣ ରେ ସଜନୀ
ଏ ମୋହର ଚିତ୍ତ ରେ । ୧ ।
କମଳବଦନା ମୁଖେ ଦେବାକୁ ଚୁମ୍ବନ
ରସୁଥିବ ଅନୁକ୍ଷଣରେ ସଜନ
ସେ ତ ଯୁବତୀ ରତନ ରେ । ୨ ।
ବଣା କୁରଙ୍ଗୀନୟନୀ ଚିତ୍ତ ବଶ କରେ
ଯେଣିକି ଗୃହିଁଲେ ସେହି ରେ ସଜନୀ
ହଣେ ନୟନ ରେ । ୩ ।
ହେମଦରନାର ଚିନ୍ତା ମନରୁ ନ ଯାଏ
ଅସ୍ଥିର କରଇ ଚିତ୍ତ ରେ ସଜନୀ
ମଦନ ତପ୍ତଏ ରେ । ୪ ।
ସୋମନାଥ ବୀରବର ଭଣେ ଏ ହରଷେ
ଆଣିଦେଲେ ପ୍ରୀତିଲତା ରେ ସଜନୀ
ରଖିବି ମୁଁ……ପାଶରେ । ୫ ।





Digitized by srujanika@gmail.com

## ନାୟକ ଚାଟୂକ୍ତି

( କ-ଚ )

କୋକିଳବଚନା କ ତୋ ବିନା ରେ
ବଞ୍ଚିବ ରେ ନବୀନା (ଘୋଷା) ।

ଖଞ୍ଜନନୟନା ଖଟିଅଛୁ ମୁଁ ତୋରେ
ଖସାଇ ନ ଦିଅ ଅଙ୍କୁ ସୁକୁନ୍ଦରଦନା ରେ । ୧ ।

ଗଜଗମନା ହସି, ଗଢ କର ସୁକେଶୀ
ଗରବ ନ କର ଚନ୍ଦ୍ରେ ମୋ ସୁଖସଦନା ରେ । ୨ ।

ଘୋଟୁଅଛୁ କରତେ, ଘନଜଘନା ତୋତେ
ଘୋଡ଼ାଇ ନ ଦିଅ ବାସ ତୋ ମୁଖରେ ସିନା ରେ । ୩ ।

ଙଛ ଙରକା ସଖି, ଊଣା କ ମୁଖେ କହି
ଙରକ ଲଗାଅ ଦେହେ ଯାଉ ମୋ ବେଦନା ରେ । ୪ ।

ଚମ୍ପକୁ କଂପା ଡରେ, ଚମ୍ପାବରନା ମୋରେ
ଚୃହାଁ ସୋମନାଥ ଭଣେ କାହିଁକି ବିମନା ରେ । ୫ ।



## ନାୟକର ବିରହାନୁଚିନ୍ତା

ରସରଙ୍ଗିନୀ ରେ, ମୋହ ସଜନୀ ରେ । ୦ ।

ପଥକୁ ନିରେଖି କମଳବଦନୀ ରେ
ବୋଲୁଥିବ ନଇଲେ ମୋ କାନ୍ତ
ଚଞ୍ଚଳ ଚଉକୁ ଧର ନୋହୁଥିବ ବେଶରେ
ପିନ୍ଧିବାର ବାସ ଗନ୍ଧୁ ହେବନ ରେ । ୧ ।

ଗୁଣମଣି ଗୁଣି ଦୁଃଖମନେ ଘେନ
ମଳିନ ହେବ ଚନ୍ଦ୍ରାନନୀ
ଦହନ କନକ ଗୋଷ୍ଠି ପାଉଥିବ କ୍ଲେଶରେ
ଚଳୁଥିବ ବସି ନଖେ ଅବନୀ ପରେ । ୨ ।

Digitized by srujanika@gmail.com

କରୀନ୍ଦ୍ରଗମନା — ଏକାନ୍ତେ ମୋ ବନା ରେ
ଡରଡର ନେଉଥିବ ଧନ
କମ୍ପୁଥିବ ତନୁ ତାର — ମାରିବାରୁ ହରପର
ଏହା କି ସମ୍ଭବ ଏଣୀନୟନା ରେ । ୩ ।

ରମଣୀରତନ — ନ ଥିବ ଯତନ
ଦୂର କରିଥିବ ହୃଦହାର
ସୋମନାଥ ବୀରବର — ସିଂହ ରସେ ଭାସେ ରେ
ପଡ଼ି ଯାଉଥିବ ପ୍ରାଣସଙ୍ଗିନୀ ରେ । ୪ ।



## ନାୟିକାର ରୂପଶୋଭା

କଣ୍ଠଗତ ସେ ରସବତୀ — କରିଗଲି ସେ ଗତାଗତ
କି ଅବା ଭ୍ରୂଲତା, କାମ କମାଣ ତା — ଶର ସନ୍ଧି ମୋତେ ବାନ୍ଧିଗଲି ରେ । ୧ ।

ଫୁଲବାରୁ ସ୍ମରୁ ନାସିକା — କଲି ମୋତେ ବଶୀଣୀ ଉକା
କଟିର କିଙ୍କିଣୀ ରୁଣୁ ଝୁଣୁ ବାଜେ — ଝୁଣ୍ଟିଆ ଶବଦେ କିଣିନେଲି ରେ । ୨ ।

ବିମ୍ବାଧରେ ଲାବଣ୍ୟ ହାସ — ମନ୍ଦେ କରିଥିଲି ପ୍ରକାଶ
ସଖିଗଣ ମଧ୍ୟେ ଚନ୍ଦ୍ରମା ପରାଏ — କି ଶୋଭା ବଦନ ଦିଶୁଥିଲି ରେ । ୩ ।

କୃପାକଲେ ସେ କାଶୀବାସୀ — ବସିବ ସେ ମୋ ଅଙ୍କେ ଆସି
ସୋମନାଥ ସିଂହ ବୀରବର ମନ — ସୁନ୍ଦରୀ ଶୋଭାରେ ବୁଡ଼ିଗଲି ରେ । ୪ ।



## ନାୟକର ଚାଟୁକ୍ତି

କନକ ଗୋରୀ ! ନ ଦିଶେ ପୂରୁବ ସ୍ମୃତି ରେ । ପଦ ।

ଶିରେ ଶୋଭାପାଏ ଲୋଟଣି ଜୁଡ଼ା — ସେ ଥିଲେ ସିନା କରେ ଘରବୁଡ଼ା
ଲମ୍ବିଥାଇ ମୋର କେଶ କେଶ ରେ । ୧ ।

ମୁଖ ଦିଶେ ତୋର ଦିବସ ଇନ୍ଦୁ — ଭାଲେ ନାହିଁ ତୋର ସିନ୍ଦୂର ବିନ୍ଦୁ
ନୟନେ ତୋ ପୂରିଅଛି ବାରି ରେ । ୨ ।

Digitized by srujanika@gmail.com

**ଶୋଭା** ଦଶୁଥାଇ ରତନ ହାର    ଏବେ କମ୍ପା ଧନ କରୁଛୁ ଦୂର
ଜ କଥା ମନରେ ତୁ ବିଚାର ରେ । ୩ ।
କରେ ନାହିଁ ତୋ ବହୁତ କଙ୍କଣ    ଯେ ଅଛୁ ସେ ଖସି ପଡ଼ୁଛୁ ପୁଣ
ତନୁ ବହୁଛୁ ତୁ ଖିନ୍ନ କରି ରେ । ୪ ।
ସୋମନାଥ ରାଜା ନୃପତି ଭଣି    ଶୁଣି ତୋଷ ହେଲା ରମଣୀମଣି
ବନ୍ଦେ ଚାହିଁ ନେଲେ ଦେଲା ଠାରି ରେ । ୫ ।



## ନାୟକର ଚାଟୁ

କଞ୍ଜଗମନା ତୁ ରେ, ମୋ ମୀନନୟନା ରେ,
ସୁରପୁରେ ନ ଥିବେ ତୋ ପରି ସିନା ରେ । ପଦ ।

ଧନ କାହିଁକି ଆଜ ପୋତିଅଛୁ ବଦନ, ଏ କଥା ତ ଜଣା ହାଦେ ନ ଥିଲା ରେ ଜୀବନ,
ରତିବର ପରମାଦ କରିବଟି ତୁ ଘେନ, ବିମନା ହୋ'ନା ରେ । ୧ ।

ଆନ ନ ଧରି ଚଢେ ଟେକ ଶିଶିବଦନ, ଭାଷ ମଧୁର ଗିର ଥିର ହେଉ ପରାଣ,
ବିନା ଦୋଷେ ମାର ଦହିବ ତୁ ଆଉଣ, ଏ ନିନ୍ଦା ଜାଣ ରେ (ରାମା) । ୨ ।

ଚିରକାଳ ମୁଁ ଅନୁସରୁଛୁ ତୋହୋ ପାଶ, ନାଶ ହେଉଛୁ ଏବେ ଦେଖି ତୋର ନିରାଶ,
ଆସ ଆସ ରେ ବସ, ହାସ ତୁ ନାନା ରସ, ନ ନାଶ ଦାସ ରେ । ୩ ।

କହୁଛୁ ଧରି ମୁଁ ଯେ ତୋର କରଚରଣ, ଆରେ ପୀତସ୍ତନା ମୋତେ ନ ଦିଅ ରେ କଷଣ,
ତୁ ତେଜିଲେ ତେଜ ତୋରରେ ପଶିଲି ମୁଁ ଶରଣ, ଏକଥା ଜାଣ ରେ । ୪ ।

ବିନୟ ଶୁଣି ରାମା କ ଚଉରେ ଚାହିଁଲା, ଅଙ୍କେ ବସାଇ ରାମା ସରୁ ଚୁମ୍ବ ଦହିଲା,
ସୋମନାଥ ନର ଇନ୍ଦ୍ର ଏ ରସରେ କହିଲା, ତୋଷ ସେ ହେଲା ରେ । ୫ ।



## ନାୟକର ବିରହ

ରାମାବର, ତୋହ୍ନ ପରି ନ ଥିବେ ସଂସାର ରେ । ପଦ ।

ଘନେ ଆଚ୍ଛାଦିତ ହୋଇଲେ ଆକାଶ, ଦେଖିକରି ମୋର ଉଡ଼ୁଛୁ ସାହସ
ଅନ୍ତର ହୋଇଲୁ ଯାହା ନାସ୍ତିଇଶ, କାମ କରିଅଛୁ ରୋଷ ରେ । ୧ ।
ତୋର ବିମ୍ବାଧରେ ପୂରିଛୁ ମଧୁର, ଯୁବାଜନକୁ ନୟନ ତୀକ୍ଷ୍ଣ ଶର
ଦେଖି ସୁରପତି ହୋଇବେ କଙ୍କର, ଗୋଡ଼ାଇଥିବେ ପଛର ରେ । ୨ ।

Digitized by srujanika@gmail.com

ଧନ୍ୟ ସେ ଯୁବତୀ ରତନ ଅଧିଥ, ଯତଏ ଦେଖିଲେ ଟଳିଯିବ ମତ
ଏଣୀନୟନାକୁ କେ ଆଣି ଦେବତ, ରହିବ ତାର କାରତ ରେ । ୩ ।
ପ୍ରିୟାକୁ ପ୍ରଶଂସି ତା' ଚନ୍ଦ୍ରାରେ ବସି, କୃପା କର ମୋତେ ଦେବ କାଶୀବାସୀ
ସଖୀ ବନା ମୁହିଁ ହୋଇଲି ନମାଖୀ, ପ୍ରସନ୍ନେ ବର ଦେବତ ରେ । ୪ ।
ସୋମନାଥ ରାଜା ବୀରଙ୍କ ଈଶ୍ୱର, ଶ୍ରୀଫଳସ୍ତନାକୁ ନ ଦେଖି ଆତୁର
ଶରୀରେ ତାଙ୍କର ବାନ୍ଧୁଅଛି ସ୍ମର, ରକ୍ଷାକର ମୋତେ ହର ହେ । ୫ ।

●

## ପରକୀୟା ଦର୍ଶନେ ନାୟକ

* ଶିରୀଷାଙ୍ଗୀ ଗୃହିଁଗଲା ରେ, ଶିରକୁ କମ୍ପାଇ ତାର ।
† ଶୀତକରମୁଖୀ ଶୋଭାକୁ ଦେଖିଣ ଶରୀରେ ବାନ୍ଧିଲା ସ୍ମର । (ଘୋଷା)

ଧୀର ବୁଦ୍ଧି ମୋର ହୋଇଲା ଅଧୀର ଧୀରା ହେଉ ନାହିଁ ଦେଖା,
ଧୀରେ ରହି ଧୀର ବଚନ ନ କହି ଧୀରେ ଗଲା ପ୍ରାଣସଖା । ୧ ।
ରସିକା-ରତନ କରି ସେ ଯତନ ରଙ୍ଗେ ବାନ୍ଧିଥିଲା ବେଣୀ
ରଙ୍ଗ ତା ଅଧର ପୂରିଛି ମଧୁର ରସବତୀ ପ୍ରାଣମଣି । ୨ ।
ସ୍ତୁତି କରିବାକୁ ସମୟ ନୋହିଲା ତୁରଙ୍ଗ ପରିଏ ବେଗ
ତୁରନ୍ତେ ମୋତେ ସେ ନାଶ କରି- ଦେଇ ତୋଷି ନ ଗଲା ଯା ଅଙ୍ଗ ।୩।
ଅନୁକ୍ଷଣେ ତାକୁ ଚିନ୍ତା କରି କରି ଅଶ୍ରୁରେ ପୂରିଲା ଆଖି
ଅରକ୍ଷ ହେଉଛି ନ ପାଇ ତାହାକୁ ଅନାଦର କଲା ସଖୀ । ୪ ।
ଆସନ୍ତା ମୋ ଅଙ୍ଗେ ବସନ୍ତା ରସନ୍ତା ଆଣିଦେବ କେ ରାମାକୁ
ଆଶାକର ବାପେ ସୋମନାଥ ବୀର ବର ଆନନ୍ଦେ ତାହାକୁ । ୫ ।

●

## ନାୟକର ପ୍ରଣୟିନୀ ସ୍ମୃତି

ଆରେ ନାଗରୀ ଗୋରୀ, ନାହିଁ ନାହିଁ କାହିଁ ତୋହ ସରି । ପଦ ।

ଗେଲାଇ କରି କହିଲେ ଫୁଲୁଥାଇ ମୋ ଗ୍ରୁତ
ଦରିଦ୍ର ନିଧି ପାଇଲା ପରି ।୧।

---

* ଶିରୀଷାଙ୍ଗୀ—କୋମଳାଙ୍ଗୀ । † ଶୀତକର—ଚନ୍ଦ୍ର ।

Digitized by srujanika@gmail.com

କାମ ତାପେ ଶରୀର ମୋହୋଉଥାଏ ଦହି
ଉଶ୍ୱାସ କରେ ତୋ ସ୍ନେହ-ବାଣ ।୨।
ରତେବୃଦ୍ଧି ନ ଦଶିଲେ ଦେଉଥାଉ ଶିଖାଇ
ମୋତ ଦନ୍ତୀ ପାଦ ଛନ୍ଦକଣ ।୩।
ଆସ୍ୱଭ ନ ଥିଲେ ମୋର କର ଥାଉ ଆସ୍ୱଭ,
ଉରେ ଆଉଜାଇ କୋଲେ ଧଣ ।୪।
ସୋମନାଥ ରାଜ ଭଷି ବୋଲେ ବାଲା ହସିଲା,
କଟାକ୍ଷେ ନୟନେ ଗୃହେଁ ଫେଣ ।୫।



## ପତ୍ନୀର ଅନାଦର ଯୋଗୁ ପତିର ଖେଦ

ଗୃହିଁ ଭୁଲିଗଲା ସିନା ମତ ମୋର, ରେ ଗ୍ରମାବର,
ପ୍ରୀତ କରଥିଲି ଶୋଭା ଦେଖି ତୋର ।ପଦ।
ବୃଦ୍ଧିଲା ବେଲକୁ ମହାକାଲ ଜଣା ଗଲ୍ପନ ରେ ସ୍ନେହ ତୋର
ଆଶା ମୋ ଖଣ୍ଡିଲୁ କ ସୁଖ ପାଇଲୁ
ମାର ଯା କଲ୍ପନ ନାରଖାର ।୧।
ବମ୍ବାଧରେ ହସି କଞ୍ଜନେତ୍ରୀ ବୋଲୁଥାଉ ତୁ ଯେ ମୋର ପତ
ଏବେ ଦେଖି କର ଶ୍ରୀମୁଖ ପୋଡଲୁ
ମୁହିଁ ହୋଇ ନାହିଁ ତୋରେ ପର ।୨।
ତୋର ମାୟା ଅଟେ ବଢ଼ିପାଣି ନ ଜାଣିଲି ବୁଡ଼ିଲି ପ୍ରାଣମଣି
ଅଜାଣି ଅର୍ଜିଲି ତୋହ ନଜ × ×
ଭଷେ ସୋମନାଥ ଖାରବର ଜଗ
ଜଗଦେବ ଅନୁକୂଳ ରାଜ ।୫।



## କାନ୍ତର ଚାଟୁ

ଆରେ ରସବତୀ, ଯୁବା ମାରଣେ ତୋ ନେତ୍ର ତୀକ୍ଷ୍ଣ କାତ ।ପଦ।
ଚନ୍ଦ୍ର ଆନନୀ କୁଟିଳକେଶୀ ଗୃହିଁଲା ମାତ୍ରକେ ମନ୍ଦେ ହସି
ପଞ୍ଚଶରଧର ହୋଇବ କାତର
ଆଉ କେ ପାରବ ରଖି ମତ ରେ ।୧।

Digitized by srujanika@gmail.com

ତାଳମ୍ବଦଶନୀ ଗଜଗତି     ଭ୍ରୂପଲ୍ଲେ ଅମୀୟ ପଡ଼େ ଷିତି
ତ୍ରିପୁର ସୁନ୍ଦରୀ ତୋତେ ନୋହେ ସର
ତପ ତେଜ ବଶ୍ୟ ହେବେ ଯତି ।୨।

ତନୁ କନକ କେତକୀ ଗୋରି     ଝୀନବାସ ଫୁଟି ଦିଶେ ତୋରି
କେଶରୀମଧ୍ୟମା କରିକୁମ୍ଭସ୍ତନା
ରଖ ଦେଇ ବିପରୀତ ରତି ରେ ।୩।

କାନ୍ତବାଣୀ ଶୁଣି ରମାମଣି     ସଲଜ୍ଜିତେ କୋଳ କଲା ଆଣି
ଭଣେ ସୋମନାଥ ରାଜବୀରବର
ରତିରସେ ପୁହାଇଲା ରାତି ।୪।



## ବର୍ଷାକାଳରେ ନାୟକର ବିରହାନୁଚିନ୍ତା

(ରାଗ—ବଙ୍ଗଳାଶ୍ରୀ)

ଛାଡ଼ି ମୁଁ ଅଇଲି     କେତକୀ ଦେହକୁ
ଏ ଘନ ଦିନରେ ଯାହା
କାନ୍ଦୁଥିବ ବସି     ଗଜଗମନା ମୋ
ଆଳିଙ୍କ ସଙ୍ଗତେ ଯାହା ରେ ।୧।

ଗଣ୍ଡେ କର ଦେଇ     ଚରୁଥିବ ମହୀ
ହୃଦରେ ମୋ ନାମ ଜପ
କେତେ ଦୂରେ ଥିବେ     ପ୍ରାଣବଲ୍ଲଭ ମୋ
ହେଉଥିବ ଦିକ ଦର୍କରେ ।୨।

ଝଡ଼ିପଡୁଥିବ     ନୟନୁ ଲୋତକ
ଭିଜି ଯାଉଥିବ ଚିରି
ଫିଟିଥିବ କେଶ     ଗରୁ ହେବ ବାସ
ତେଜିବ ହାର ଆହାର ରେ ।୩।

ମଳିନ ହେବନି     ଚନ୍ଦ୍ରମାବଦନୀ
ଖିନ୍ନ କରିବନି ଦେହୀ
ତେଜିବନି ଏବେ     କର୍ପୂର କସ୍ତୁରୀ
ମୋତିଦନ୍ତୀ ପ୍ରାଣସଖୀ ରେ ।୪।

Digitized by srujanika@gmail.com

ଶିବ ସୁମରବ ମାରକୁ ଡରବ
ମୁଁ ଆଉଁ ଆଉଁ ତାହାର
ଭଣେ ସୋମନାଥ ସିଂହ ବୀରବର
ନୋହିଲ କପାଁ ପଥର ରେ ।୫।

●

## ନାୟକର ପ୍ରୀତଭାବନା

ଦୟାକର ବଞ୍ଚିବ,
ରଜନୀ ଦିବସ, ତୋ ଅଙ୍କରେ ବସି,
ମଦନ ମାଦକୁ ମୁଞ୍ଚିବ ।ପଦ।

ସୁରଙ୍ଗ ଅଧରେ ଅମୀୟ ଗ୍ରହିଣ
ହରଷରେ ପ୍ରୀତି ସଞ୍ଚିବ
ଗ୍ରନ୍ଦ ବଦନରେ ଚୁମ୍ବନ ବାହିଣ
ବିପରୀତ ରସ ରସିବ ।୧।

ତୋର ଉରଜରେ ଲଗାଇ କରଜ
କରେ ଭିଡ଼ି କରି ରଖିବ
ଚନ୍ଦ୍ରପଟେ ଯାହା ଲଗାଇଲ ପରି
କନକ ଅଙ୍ଗରେ ଲିଖିବ ।୨।

ରସିକାରତନ ପରାଣର ଧନ
ସେବକ ପରାଏ ସେବିବ
କର କରୁଣା ରେ ପଙ୍କଜନୟନା
ନାନା ସୁରସରେ ରସିବ ।୩।

ଶୁଣିଣ ଚତୁରୀ ମନ୍ଦେ ହସିକରି
ଅତି ଆନନ୍ଦରେ ଭାବ
ସୋମନାଥ ସିଂହ ବୀରବର ବୋଲେ
ପାଶରୁ ଅନ୍ତର ନୋହିବ ।୪।

●

Digitized by srujanika@gmail.com

## ନାୟକର ସମ୍ଭୋଗଲାଳସୀ ନାୟିକା ଭାବ ସ୍ମରଣ

ବନ୍ଧୁର ଆଜ ସ୍ନେହ କିଣି ରଖିଲ ।୧।
ସଂଗ୍ରାମେନ୍ଦ୍ର          ପକାଇ ଲାଜ
ଦର ଦର ହୋଇ ରସିଲା ରେ ।୧।
ନେତ୍ର ସଗୋଦ          ତୀକ୍ଷ୍ଣ ନାରାଚ
ବାଜ ଚେତନା ମୋର ହଜିଲା ।
ଶୀତ ନ କଲା          ପ୍ରୀତିକି କଲା
ଚନ୍ଦ୍ର ମୁଖରୁ ଚୁମ୍ବ ବହିଲା ।୩।
ବସାଇ ଅଙ୍କେ          ଦନ୍ତ ପଲଙ୍କେ
ଥର ଥରଣ ତନୁ ଭିଡ଼ିଲା ।୪।
ଶ୍ରୀ ସୋମନାଥ          ଭାଷନ୍ତ ଗୀତ
ସେ ପ୍ରୀତି ଛାଡ଼ି କେବେ ନୋହିଲା ।୫।



## ନାୟକର ଚାଟୁ

ରସ କଦମ୍ବ, କର ତୁ ଆସି * ପରିରମ୍ଭ । (ଘୋଷା)
ତୋ' ପଥ ଅନୁସରି          ବସିଛୁ ଚମ୍ପାଗୋରୀ
ଦେଖି ମାନସ ଗଲା ଥରି । ୧ ।
ସୁକଳା ମେଘୀ ଶାଢ଼ୀ          ପିନ୍ଧିଅଛୁ ସଜାଡ଼ି
କି ରଙ୍ଗେ ଅଙ୍ଗେ ଅଛୁ ଜଡ଼ି । ୨ ।
କଟି ହେମକିଙ୍କିଣୀ          ବଜାଇ କିଣି କିଣି
ଲେଖ ଚନ୍ଦରେ ଦେଲୁ ହାଣି । ୩ ।
ପାଦେ ଝୁମୁକ ବଳା          ଦେଖି ମୁଁ ହେଲି ଭୋଳା
ଗଳାରେ ଦେବା ମଲ୍ଲୀମାଳା । ୪ ।
ନାସାପୁଟେ ବସଣୀ          ମସ୍ତକେ ମଥାମଣି
ଦେଖି ମୋ ମନ ନେଲୁ କିଣି । ୫ ।
ସୋମନାଥ ଭୂପତି          ମାନସେ ଏହା ଚିନ୍ତି
କି ଯୋଗେ ପାହିଥିଲା ରାତି । ୬ ।



* ପରିରମ୍ଭ—ଆଲିଙ୍ଗନ ।

Digitized by srujanika@gmail.com

## ନାୟିକାର ରତକ୍ରୀଡ଼ା

( ରାଗ—ଧନ୍ୟାଶି )

କାମ ସମର ମୋ ଜାଣେ ଅଙ୍ଗନା ରେ । ପଦ ।

ଚମକାଇ କର ଅଙ୍ଗ ଉଲଟ ରତ ଆରମ୍ଭ
କମ୍ପାଇ ଅଧର ଗ୍ରହେ ରସନା ରେ । ୧ ।

ଭୁଜେ ଭୁଜ ଭଡ଼ାଭଡ଼ି କରନ୍ତେ ମୋ ଅଙ୍ଗେ ଜଡ଼ି
ଘାଉଥାଏ ଝାଳେ ଚୂଡ଼ି ସେ ପିନା ରେ । ୨ ।

ଛନ୍ଦଣ ପାଦକୁ ପାଦ ହୁଅଇ କେଡ଼େ କୋମଦ
ଇସି ଇସି ବୋଲି ଭାଷେ ନବୀନା ରେ । ୩ ।

ନ ରହେ ଆସ୍ତୃତ ତାର କେଶ ବେଶ ଅସମ୍ଭାଳ
ମନ୍ଦେ ମନ୍ଦେ ହସେ ପିକବଚନା ରେ । ୪ ।

ସୋମନାଥ ଶାରଦର ଭାଷନ୍ତି ତା' ପ୍ରୀତ ସାର
ନାହିଁ ନ ଥିବ ସଂସାର ତା' ବିନା ରେ । ୫ ।



## ନାୟକର ପ୍ରିୟା ବିରହଭାବନା

( ରାଗ—ବଙ୍ଗଳାଶ୍ରୀ )

ଗୁଡ଼ ରସବତୀ କମ୍ପା ରହିଲି ମୁଁ ଏଥି ରେ । ଘୋଷା ।

ସାରସଗମନାକୁ ମୋ ବିନା ନାହିଁ ଗତି ରେ,
ସୁଖକୁ ବିସୁଖ ମଣୁଥିବ ତାର ମତି ରେ । ୧ ।

ଖଳୁ ଖଳୁ ନ ସରିବ ତାକୁ ଦିବାରାତି ରେ,
ଖଞ୍ଜନନୟନୀ ନୀର ଝଡ଼ୁଥିବ ନିତି ରେ । ୨ ।

ଚନ୍ଦ୍ରମା ବଦନେ ଆଉ ନ ଥିବ ତା ଜ୍ୟୋତି ରେ,
ବାଉଳ ହେବନି ଏବେ ସେ ମୋ କୁନ୍ଦଦନ୍ତୀ ରେ । ୩ ।

ବୋଲୁଥିବ ଆଳୀଙ୍କି ନଇଲେ ମୋର ପତି ରେ,
ସୋମନାଥ ଶାରଦର ଏ ରସେ ବଦତି ରେ । ୪ ।



Digitized by srujanika@gmail.com

## ନାୟିକା ପ୍ରତି ନାୟକ

ସଙ୍ଗାତ, କହୁଅଛୁ ଯେବେ ବାରେ । ଦୟାକର ମୋହଠାରେ । ଘୋଷା ।

ବିପଞ୍ଚିତ ସଂଗ୍ରାମେ ବଳିଲି ମୋ ଚିତ୍ତ ।
ତୁହି ତ ରସିକା ମୁହିଁ ତ ରସିକ
ନିରାଶ ନ କର ମିତ । ୧ ।
ପୂର୍ଣ୍ଣବିଧୁ ବଦନରେ ଦେବି ମୁଁ ଚୁମ୍ବନ,
ଅଧରେ ଅଧର ଲଗାଇ କରଣ
ପିଇବି ଅମୀୟ ପାନ । ୨ ।
ଆହଲାଦ ଉରଜରେ ଲଗାଇବି କର,
ଭୁଜେ ଭୁଜ ଭିଡ଼ି ମଦନ ଭୟକୁ
କରି ଦେଇଥିବି ଦୂର । ୩ ।
କେତକୀ ଦେହରେ ରଙ୍ଗ ବିବିଧ ପ୍ରକାରେ ।
ଜଡ଼ାଜଡ଼ି ହୋଇ କଟିକି କମ୍ପାଇ
ଦେଉଥିବୁ ଥରେ ଥରେ । ୪ ।
ପ୍ରିୟ ବାଣୀ ଶୁଣି ରାମା ହୋଇଲି ହସ ହସ ।
ରଚିଲେ ଗୀରତ ବଞ୍ଚିଲେ ସେ ରାତ
ଶ୍ରୀ ସୋମନାଥ ନରେଶ । ୫ ।



## ନାୟକ ପ୍ରତି ଅଭିମାନୀ ନାୟିକା

(ରାଗ—ଶଙ୍କରାଭରଣ । ତାଳ—ଏକତାଳୀ, ଗୃହ ସଜନୀ ବୃତ୍ତରେ)

ଗୁଡ଼ ହେ ପାଣି ଜାଣିଥିଲି କେ ଏହା
ପାଷାଣରୁ କର୍କଶ, ପୁରୁଷଙ୍କ ମାନସ । ଘୋଷା ।

ଯାଇ ଦୂର ବିଦେଶେ, ଥାଇ ହରଷେ, ନାହିଁ ଏ ଜ୍ଞାନ ଲେଶେ,
ଶିରୀଷ ସୁକୋମଳା, ସ୍ୱଭାବେ ଯେ ଅବଳା, ସେ ପୁଣି ଅବହେଳା,
କୁଳଶେ ହେବ ଦଳା । ୧ ।
ଯା ବିନୟ ବଚନେ, ଶୁଣଇ କାନେ, ତାକୁ ମାର ଜୀବନେ
ଯେହୁ ଏଡ଼େ ଦାରୁଣ, ସେହୁ ମନ୍ମଥ ବାଣ, ବିହୁ ଯହିଁ କଷଣ,
କେହୁ ରହିବ ପ୍ରାଣ । ୨ ।

Digitized by srujanika@gmail.com

କହୁଛ ସୋମନାଥ୍, କି ମନୋରଥ, ଖୋଲି କହ ହେ ନାଥ,
ହଠ ନକର ମଠ, ଶଠ ଗ୍ରନ୍ଥ ନ ଗଠ, ପଠନେ ହେବ କାଠ,
ମୋ ସେ ବିରହ ପାଠ । ୩ ।



## ନାୟିକାର କେଳିସଦନ ବାହୁଡ଼ା ରୂପ

ଆରେ ମୋହ ଜୀବଜୀବନ । ଘୋଷା ।

ଆଜ ତନୁ ଥରଥର ଚାଲୁଅଛୁ ଧୀରଧୀର
ଶବଦ ନ କରେ ପାଦ ନୂପୁର ରେ
କେଶ ଲୋଟୁଛି ପୃଷ୍ଠର ରେ । ୧ ।
ରଙ୍ଗିମା ଦିଶେ ନୟନ, ଗଣ୍ଡୁ ଲିଭିଛି ଚନ୍ଦନ,
କପୋଳେ ସିନ୍ଦୂରବିନ୍ଦୁ ମଳିନ ରେ,
ଓଷ୍ଠ ଶୁଖିଅଛି ପୁଣ ରେ । ୨ ।
ଅଙ୍ଗେ ନ ରହେ ବସନ ଚାଲନ୍ତେ ଝୁଣ୍ଟୁଛୁ ପୁଣ
ଝୋପି ଝୋପି ଝାଳ ଦିଶେ ବଦନ ରେ
ଥିଲୁ କି କେଳି ସଦନ ରେ । ୩ ।
ଶୁଣିଣ ସଙ୍କୋଚ ପୁଣ, ନ ଟେକିଣ ସେ ଆନନ,
ଭଣେ ସୋମନାଥ ନୃପ ସୁଜନ ରେ,
ମନ୍ଦେ ହସିଗଲା ଜାଣି ରେ । ୪ ।



## ନାୟକର ଚାଟୂକ୍ତି

(୧) କୁମୁଦ ବାନ୍ଧବ, ଜିଣି ତୋ ଆନନ, ଝଟଝଟ ଦିଶୁଥିଲା
କହିବାକୁ ଭାଷା, ସମସ୍ତ ନୋହିଲା, (୨) ଆଳି ତୋ ପାଶରେ ଥିଲା ରେ ।୧।
ଖଞ୍ଜନ ନୟନେ ମୋ ମନ ମୋହିଣ ଘେନଗଲା ପ୍ରାଣସଖୀ
ଖଟିବାକୁ ପାଶେ ମୋର ଆଶ ଥାଏ ସମସ୍ତ ନ ପାଏ ମୁହିଁ ରେ । ୨ ।
(୩) ଗରକଣ୍ଠରିପୁ ଶରେ ସରଗଲି ତୁହି ଥାଉ ଥାଉ ମୁହିଁ
ଗଜଗମନା କୃପା ବାରେ କଲେ ତୁ ବସନ୍ତ ଅଙ୍କରେ ଯାଇ ରେ । ୩ ।

(୧) କୁମୁଦବାନ୍ଧବ—ଚନ୍ଦ୍ର । (୨) ଆଳି—ସଖୀ । (୩) ଗରକଣ୍ଠରିପୁ—କନ୍ଦର୍ପ ।

Digitized by srujanika@gmail.com

ଘରେ ମୋର ମତ    ନ ରହିଲା ସଖୀ    ଶୋଭାକୁ ଦେଖି ତୋହର
ଘଟଣ ସ୍ତନରେ    ଆଉଜିବାକୁ ମୁଁ    କରୁ ଯେ ଥାଇ ବାଗୁର ରେ । ୪ ।

ଉଠି କୋଳ କରି    ଧଇଲା ଚତୁରୀ    ଶୁଣିଣ ପ୍ରିୟ ବଚନ
ଉଜାଗରେ କଣି    ପୁଛାଇଲା ବସି    ଶ୍ରୀ ସୋମନାଥ ରାଜନ ରେ । ୫ ।

●

## ନାୟକର ଗୀତ

(ରାଗ—କଳହଂସକେଦାର)

ଆସ ରେ ପଙ୍କଜନୟନା,    ବସୁ ତୁ ମୋ ଅଙ୍କେ ନବୀନା । ୦ ।
ତୁ ଥାଉ ମାର ଯା କଷଣ,    ଦେଉଛୁ କାହାକୁ ଦୂଷଣ । ୧ ।
ତର୍ଜଣ କରଛୁ ସେ ଠାଣ    ଭାଙ୍ଗିବ ମୋହର ଗୁମାନ । ୨ ।
ନାଶିବ ଯେମନ୍ତେ ସେ ମୋତେ    ବଞ୍ଚିବ କହ ମୁଁ କେମନ୍ତେ । ୩ ।
ଏକେ ତ ଅଟେ ସେ ଉଙ୍ଗର    ଆୟୁତ ନ ରଖେ ମୋହର । ୪ ।
ସୋମନାଥ ରାଜା ବଦତ    ଶୁଣିଣ ହସିଲା ଯୁବତୀ । ୫ ।

●

## ପରକୀୟା ନାୟିକା ଦର୍ଶନେ ନାୟକ

ତ୍ରିପୁରମୋହନୀ ସଖୀ ମଧ୍ୟେ ହସି ଗୁହିଁଲା
ଦେଖିଲା ମାତ୍ରକେ ଚଉ ତା' ଶୋଭାରେ ରହିଲା । ୦ ।
କହିବାକୁ ଭାଷା ପଦେ ସମସ୍ତ ତ ନୋହିଲା
ପାଣରୁ ଅନ୍ତର ତାର ସପତ୍ନୀ ଯା' ହୋଇଲା । ୧ ।
ସେହିଦିନୁ ମନସିଜ ମୋ ତନୁକୁ ଦହିଲା
ମୋ ଦୁଃଖ ତ ଜଣେ କେହି ତା' ଆଗେ ନ କହିଲା । ୨ ।
ରସିକାରମଣି ନାହିଁ କାମଖିଦ ହୋଇଲା
ଖାଲୁଖାଲୁ ଏବେ ମୋର ତନୁ ଖିନ୍ନ ହୋଇଲା । ୩ ।
ସୋମନାଥ ବାରବର ବରହରେ କହିଲା
ଯେହୁ ଆଣିଦେବ ତାକୁ କୀଟଚ ଭୁଆଇଲା । ୪ ।

●

Digitized by srujanika@gmail.com

## ଜଗନ୍ନାଥ ଜଣାଣ

କେଉଁଠେ ଦୟା ନୋହିଲା
କମଳଲୋଚନ ପ୍ରଭୁ ଥାଉ ଥାଉ
ମୋ କର୍ମ ବିଫଳ ହୋଇଲା ହେ । ଘୋଷା ।

ନୀଳାଚଳେ ଥାଇ ଡାକିଲେ ନ ଶୁଣ
ଏକଥା ସନ୍ଦେହ ଲାଗିଲା
କେତେ ଦୂରେ ଗଜରାଜ ସୁମରନ୍ତେ
ସେ କଥା କର୍ଣ୍ଣକୁ ଶୁଭିଲା ହେ । ୧ ।

ମହାଘୋର କଷ୍ଟୁ ଗାନ୍ଧାରୀନନ୍ଦନ—
ସଭାରୁ ଦ୍ରୌପଦୀ ତରିଲା
କୋଟି ବସ୍ତ୍ର ପାଇ ଭାନୁମତୀ ପତି
ବଦନେ କାଳି ଲଗାଇଲା ହେ । ୨ ।

ଆହୁରି କଥାଏ ଶୁଣିଅଛୁ କର୍ଣ୍ଣେ
ପାଷାଣ ଯୁବତୀ ହୋଇଲା
ଶ୍ରୀରଘୁନନ୍ଦନ ଚରଣ ଲାଗିଣ
ପତିଭକ୍ତ ଲେଖା ହୋଇଲା ହେ । ୩ ।

ଘୋରବନେ ପଡ଼ି କୁରଙ୍ଗୀ ନନ୍ଦନ
* କୁରଙ୍ଗୀ କି ଦଶା ପଡ଼ିଲା
ଦୀନବନ୍ଧୁ ନାମ ହୃଦରେ ଧରନ୍ତେ
କେତେ ବିପତ୍ତି ତା ଗୁଡ଼ିଲା ହେ । ୪ ।

କମଳାକାନ୍ତକୁ ଭରସା କରିଣ
ଲୋକହସା ଏବେ ହୋଇଲା
ଭଣେ ସୋମନାଥ ଅନୁକୂଳ ପତି
ଏ ନିନ୍ଦା କାହାକୁ ହୋଇଲା ହେ । ୫ ।



* କୁରଙ୍ଗୀ—ହରିଣ ।

Digitized by srujanika@gmail.com

## ବିଷ୍ଣୁ ବନ୍ଦନା

(ରାଗ—ମାଳଶ୍ରୀ)

ଜୟ ଜୟ ଜଗବନ୍ଦନ କେଶବ ଜୟ ହେ ଯାମଳା ଭଞ୍ଜ
ଗର୍ବୀ ଜନ ଗର୍ବ ତୁଟନ୍ତେ ଭଞ୍ଜ । ଘୋଷା ।

ଚଉଦ ବ୍ରହ୍ମାଣ୍ଡେ ପ୍ରକାଶି ଅଛ ଯେ ଯାହା କାମନା କଲେ ଦେଉଛ
ଏମନ୍ତ ମହିମା କେ କରେ ଅନ୍ତ ଅନ୍ତର୍ଯ୍ୟାମୀନାଥ କମଳାକାନ୍ତ । ୧ ।
ଦୁଃଖୀ-ଜନ ଦୁଃଖ ଦେଖି ନ ସହ ପତିତଜନପାବନ ବୋଲାଅ
ଶଙ୍ଖ, ଚକ୍ର, ଗଦା, ପଦ୍ମକୁ ବହ ଦାନବଙ୍କ କାଳ ଦେବତା ହୁଅ । ୨ ।
ଦୂରେ ଥାଇ ଯେହୁ କରେ ଗୁହାରି ରଖିବ ବୋଲି କର୍ଣ୍ଣେ ଥାଅ ଡେରି
ତୁଟନ୍ତେ ମାନସ ପୂର୍ଣ୍ଣ କରି ଚକ୍ରେ ବିନାଶ କର ରାହୁ ପରି । ୩ ।
ଶରଣ ଜନକୁ ଅମର କର କରୁଣା ସାଗର ନାମ ତୁମ୍ଭର
କହି ଶେଷ ନୁହେଁ କାରତି ଯାର ଧରିଣୀ କର ଲକ୍ଷେଣ ପ୍ରକାର । ୪ ।
ବିଚିତ୍ର କଥାକୁ ଉଚିତ କରି ପାଦରେ ପାଷାଣ ଯୁବତୀ ଯା'ର
ଶୁଣା ନ ଥିଲି ଏ କର୍ଣ୍ଣେ କାହାର ପ୍ରଭୁ ଏହୁ କି କି ଚରିତ୍ର ପ୍ରକାର । ୫ ।
ଚକ୍ରାରେ ଯା'ର ବୁଦ୍ଧି ନ ଦିଶଇ ଚକ୍ରାମଣି ବୁଦ୍ଧି ଚଳେଇ ଦେଇ
ଭାରତେ ଅର୍ଜ୍ଜୁନ ଯେସନେ କହି କୌରବଙ୍କୁ ନାଶିଲ ସାହା ହୋଇ ।୬।
ନୃପତି କୁଳ ପଦ୍ମ ଦିନମଣି ବୀରଧ୍ୱଜ ବୀରଙ୍କ ଅଗ୍ରଣୀ
ରାଜା ଶ୍ରୀସୋମନାଥ ସିଂହ ଭଣି କହୁଛନ୍ତେ କୃପାକର କମ୍ବୁପାଣି । ୭ ।



## ଜଗନ୍ନାଥ ବନ୍ଦନା

(ରାଗ—ମାଳଶ୍ରୀ)

ଦେଖ ଦେଖ ପଦ୍ମମୁଖ ମହାମେରୁ, କ୍ଷୟ ହୁଏ କୋଟି ଜନ୍ମର ଦୁଃଖ ।୦ ।
ଶିର ଶୋଭବନ ସେବନ୍ତି ପୁଷ୍ପ, ଶ୍ରୀରଙ୍ଗା ଅଧରେ ଲାବଣ୍ୟ ହସ
କରୁଛନ୍ତି ପ୍ରଭୁ ଜଗତେ ବାସ, ଚକାନୟନେ ମୋହନ୍ତି ଦଶ । ୧ ।
ଠେକ ନାସାକୁ ଶୋଭଇ ବସଣୀ, କର୍ଣ୍ଣେ କୁଣ୍ଡଳ କଣ୍ଠେ ନାନା ମଣି
ହୃଦେ କଉସ୍ତୁଭ ବିରାଜେ ପୁଣି, ତେଜ ବିକାଶ ଦିନମଣି ଯେନି । ୨ ।
କପାଳେ କସ୍ତୁରୀ ଚନ୍ଦନ ଠିଆ ଚିତା, ତହିଁପରେ ଅଛି ଗଜମୁକୁତା
ଭୁଜ ଟେକିଛନ୍ତି ଜଗତକର୍ତ୍ତା, ଭକତବାନ୍ଧବ ତ୍ରୈଲୋକ୍ୟପିତା ।୩।

Digitized by srujanika@gmail.com

ସିଂହ କଟୀରେ ଶୋଭେ ପୀତାମ୍ବର,
ରତ୍ନ ସିଂହାସନ ଚକା ଉପର,
ଯାହାଙ୍କ ନ ପାନ୍ତି ଚଉଦପୁରେ,
କରୁଣା କରନ୍ତେ ହେଉ ମୋଠାରେ,
ତହିଁ ଖଞ୍ଜିଛନ୍ତି କଙ୍କିଣି ସାର,
ବକେ କରିଛନ୍ତି ମାଳ କନ୍ଦର ।୪।
କ ଉପମା ଦେବା ସେ ପ୍ରଭୁଠାରେ
ସୋମନାଥ ସିଂହ ରାଜା ବରୁରେ ।୫।

●

## ବସ୍ତ୍ର ବନ୍ଦନା

ପ୍ରଭୁ ହେ ! ବହୁତ ଦୁଃଖ ହୋଇଲା, ସିନ୍ଧୁନନ୍ଦନୀବଲ୍ଲଭ
ପଦ୍ମପାଦ କୃପା ତ ମୋହରେ ନ ହୋଇଲା । ଘୋଷା ।

ଜଣାଇବ ଶ୍ରୀ ଶ୍ରୀମୁଖରେ ବୋଲି କରି
କରିଥାଏ ମନେ ଭାଳେଣି
ଚଉଦ ବ୍ରହ୍ମାଣ୍ଡ ପ୍ରଭୁ ଥାଉଁ ଥାଉଁ
ଚନ୍ତା ହେବ କାହିଁକି ପୁଣି ।୧।
ଶ୍ରୀମୁଖରେ ସେବ ବଡ଼ ଭରସା ମୋ
ଅଭରସା ହେଲା ଚଉରେ
ଗୁହାର ନ ଶୁଣି ମାର ମହାମେରୁ
ପ୍ରଭୁ କରୁଣା କ ଚଉରେ ।୨।
ଯାହାର ଶ୍ରୀମୁଖ ଦର୍ଶନ ମାତ୍ରକେ
ଅନ୍ଧ ପାଇଲା ଚକ୍ଷୁଦାନ
ସେହି ଶାନ୍ତିକୁ ସେବା କରି କରି
ହୋଇଲି ଏବେ ଘ୍ରାନମାନ ।୩।
କନ୍ଦାଇ କହିବ ଭୃତ୍ୟ ନାଶ ହେବ
ତୁମ୍ଭର ଦେଖିଣ କପଟ
ଅକଟ ନୋହୁ ଶ୍ରୀମୁଖେ ଆଜ୍ଞା ହେଉ
ଯାଉ ଏବେ ମୋର ସଙ୍କଟ ।୪।
ହାସ୍ୟ ହୋଇଲାଣି ବେଳକୁ ବେଳକୁ
ଦେଖି ନ ଶୁଣ ମୋର ଦୁଃଖ
କେତେ ଦୂରେ କଶ୍ୟ-ବର ଡାକିଲାକୁ
ରଖିଲ ତାକୁ ପଦ୍ମମୁଖ ।୫।
ଯାହା ମହିମା ତ ଅପାରୁ ଅପାର
ଶୁଣିଲି ପଶିଲି ଶରଣ
ଶରଣରକ୍ଷଣ ଦ୍ରୌପଦୀତାରଣ
ତୁମ୍ଭ ଆଜ୍ଞା ମୋର କାରଣ ।୬।
ଯେହୁ ଦେଖିଥାଇ ସେ ସିନା ଜାଣଇ
ଆଉ କେ ଜାଣିବ କହ ତ
ମାରକଣ୍ଡ ଋଷି ଭାସି ଯାଉଥିଲେ
ରଖିଲେ ପତ୍ରେ ଯେ ତାହାଙ୍କୁ ।୭।
ଦସ୍ତା ସାଗର ଭାଳିଲେ ଲୋକେ ଶୁଣି
ହୋଇବେ ବଡ଼ ଆଚମ୍ବିତ
ଅଚନ୍ତା ପୁରୁଷ ଚନ୍ତା ପାଇ ନାହିଁ
ଏ ତନପୁର ମଧ୍ୟତ ।୮।
ମଣିମା ମୁଁ ଯାହା କହୁଛୁ ଶୁଣିମା
ଆସୁ ହୃଦ୍ୟ ଅବଧାନକୁ
ଲଲାଟ ପଟେ ନ ଥିବ ଯାହା ଲେଖା
ବଗୁରିଲେ ହେବ ତାହାକୁ ।୯।
ଅବଧାନକୁ ଆସୁ ଯା ଜଣାଉଅଛୁ
ଚଉରେ କରିବା ବଗୁର
ଚନ୍ଦ୍ରେ ସୋମନାଥ ଜଗଦେବ ଖାର—
ବର ରାଧାକୃଷ୍ଣ ପସ୍ୱର ।୧୦।

●

Digitized by srujanika@gmail.com

॥ ଭକ୍ତି ଗୀତିକା ॥

ଶ୍ରୀ ଅମ୍ବିକାୟୈ ନମଃ

ରାଗ – ମାଳଶ୍ରୀ

## ପ୍ରଥମ ଆଖ୍ୟାନ

ଜୟ ଜୟ ବିଶ୍ୱେଶ୍ୱରୀ ଗୋ ଜନନୀ ଜୟ ଜଗତଧାରିଣୀ
ପୁଣି ବ୍ରହ୍ମରୁଦ୍ର କଲେ ପ୍ରସନ୍ନ ଜାଣି (ସତପାଠ)
ଖଡ୍‌ଗଧାରିଣୀ ମୁଣ୍ଡମାଳିନୀ ଶୂଳ ଚକ୍ର ବିରାଜିତେ
ଖପର କରେ ଧରିଭୁଣି କସୀ କରି ଗୃପଦାଣ ଅତି ଶୋଭିତେ
ବିକଟ ମହାସୁର ପ୍ରଚଣ୍ଡ ଭୟଙ୍କର ଚକ୍ରେ ଛେଦିଲ ତୁରିତେ
ପୁଣି ମଧୁକୈଟଭ ନାଶିଲ କଞ୍ଚିତେ । (ପଦ) ।

କହନ୍ତି ମାର୍କଣ୍ଡ ରାଜନ ଯେନ, କହୁଛି ସାବର୍ଣ୍ଣି ସୂର୍ଯ୍ୟନନ୍ଦନ
କର୍ଣ୍ଣେ ଶୁଣ ତୁହି ତାଙ୍କ ଉତ୍ପତ୍ତି, କହିଲେ ମୁନି ଯେନ ରାଜାପ୍ରୀତି । ୧ ।
ଖଣ୍ଡମଣ୍ଡଳରେ ସେ ରାଜା ଯେନ, ଖଣ୍ଡିଥିଲେ ସର୍ବ ଦୁର୍ଗତିମାନ
* କ୍ଷିତିରେ ତାଙ୍କ କୀର୍ତ୍ତି ହୋଇଥିଲା, ଖଣ୍ଡମଣ୍ଡଳେ ଯଶ ପ୍ରକାଶ ହେଲା । ୨ ।
ଗଉରୀ ପ୍ରସାଦୁ ଯେ ଅନୁମାନେ, ଗୋ ମଧ୍ୟେ ସୁରଥ ରାଜା ବିଧାନେ
ଗଉରବ କରି ପାଳନ୍ତି ପ୍ରଜା, ଗୃହେ ଶତ୍ରୁମାନେ କଲେ ତ ରଜା । ୩ ।
ଘୋର ଯୁଦ୍ଧ ରାଜାମାନେ ସେ କଲେ, ଘର ଛାଡ଼ିଣ ସୁରଥ ଯେ ଗଲେ
ଘୋର ଭୟ ଦେଇ ଦ୍ରବ୍ୟକୁ ହରି, ଘୋର ବନେ ହୟ ଚଢ଼ି ବିଦାରି । ୪ ।
ନଷ୍ଟଲେଷ୍ୟେକ ମୁନିସ୍ୟେ ଦେଖିଲେ, ନମିଣ ବହୁତ ଦିନ ରହିଲେ
ନିକଟେ ଦେଖିଲେ ଏକଇ ଅଶ୍ୱ, ନଷ୍ଟସ୍ୱ ଜାଣିଲେ ପରେ ନରେଶ । ୫ ।
ତୁରିତେ ରାଜା ଅଶ୍ୱକୁ ଆରୋହି, ଚଞ୍ଚଲେ ମାର୍କଣ୍ଡ ରାଜାଙ୍କୁ ଚାହିଁ
ଚପଳେ ବିଶ୍ୱର ତାପର ହେଲା, ଚକିତ ହୋଇଣ ରାଜା କହିଲା । ୬ ।
ଛଳ ବୁଦ୍ଧି ଯେ ନ ଜାଣିଲି ମୁହିଁ, ଛଳ ଶତ୍ରୁମାନେ ଏ ଦଶା ଦେଇ
ଛଳ କରି ମୁହିଁ ଆସିଲି ଏଥି, ଛଳ କହୁ ନାହିଁ ଶୁଣ ହେ ଯତି । ୭ ।
ଯତି କହନ୍ତି ରାଜାବାଣୀ ଶୁଣି, ଜଗତେ ଅନେକ ଜୀବ ପ୍ରମାଣି
ଜନ୍ତୁ ମଧ୍ୟେ ନର ଅଟନ୍ତି ସାର, ଜୀବରେ ଜ୍ଞାନ ଯେ ଅଟଇ ଧୀର । ୮ ।

---

* କ୍ଷିତି—ପୃଥିବୀ ।

Digitized by srujanika@gmail.com

ଝିମିଟି ମାତ୍ରକେ ସେ ମହାମାୟା, ଦଳିଛୁ ସଂସାରେ ଏ ସର୍ବକାୟା
ଞଟେଢ ପ୍ରଭୁ ଯୋଗ ନିଦ୍ରାଗତ, ଝୁଲିଛୁ ମାୟା ମୋହରେ ଜଗତ । ୯ ।
ନାମରେ ଦେବୀ ଭଗବତୀ ପୁଣି, ନରଙ୍କୁ ମୋହିତ କରିଛୁ ଜାଣି
ନର ସୃଷ୍ଟିକ କରନ୍ତି ସର୍ଜନା, ନମିପେ ପ୍ରସନ୍ନେ କର କରୁଣା । ୧୦ ।
ଟଳଇ ନାହିଁ ଯାର କୃପା ଜାଣ, ଟିକାୟେ ସଂସାର କରଇ ପୁଣ
ଟେକ ଡାକଲେ ଆର୍ତ୍ତିକୁ ନାଶଇ, ଟାଣ ଗ୍ରାସଙ୍କ ଗର୍ବ ଗଞ୍ଜଇ । ୧୧ ।
ଠଣ ବଚନ ଋଷିଙ୍କର ଶୁଣି, ଠିକେ ରାଜା ସ୍ତୁତି କଲେ ସେ ପୁଣି
ଠିକେ ତାଙ୍କ ସ୍ତୁତି ଜାଣିଲେ ଋଷି, ଠିକ କରି ଦେବୀ ଚରଣ ଖୁସି । ୧୨ ।
ନିତ୍ୟ ସ୍ୱରୂପା ଜଗତର ମାତ, ତାହାରେ ଜଗତ ହୋଇଛୁ ଜାତ
ଦେବତାମାନଙ୍କ କାର୍ଯ୍ୟ ନିମନ୍ତେ, ଜନ୍ମକୁ ଲଭିଲେ ଯେଉଁ ଜଗତେ । ୧୩ ।
ଯୋଗ ନିଦ୍ରାଙ୍କୁ ବିଷ୍ଣୁ ଜନ୍ମ କଲେ, ଜଳରେ ଜଗତ ପୂରିତ ହେଲେ
ଏଥୁ ଅନ୍ତେ ଯୋଗ ହେଲ କଳ୍ପାନ୍ତ, ବିଷ୍ଣୁଙ୍କ ନିମନ୍ତେ ମଳୁ ବନିଦାୟିନ୍ତ । ୧୪ ।
ବିଷ୍ଣୁ ନାଭିରୁ ବ୍ରହ୍ମାଜାତ ହୋଇ, ତାଙ୍କୁ ଦେଖି ଦୈତ୍ୟ ରୋଷକୁ ବହି
ମଧୁକୈଟଭ ବେନି ଅସୁର, ତାଙ୍କ କୋପ ଦେଖି ବ୍ରହ୍ମା ଅସ୍ଥିର । ୧୫ ।
ବିଷ୍ଣୁଙ୍କ ଯୋଗ ନିଦ୍ରାକୁ ଦେଖିଣ, ଯୋଗମାୟାଙ୍କୁ ସ୍ତୁତି କଲେ ପୁଣ
ହରଙ୍କର ନେତ୍ର ଯାହାର ଗୃହ, ବ୍ରହ୍ମା ସ୍ତୁତି କଲେ ଦେଖି ସନ୍ଦେହ । ୧୬ ।
ଜୟ ବିଶ୍ୱେଶ୍ୱରୀ ଜଗତମାତ, ସ୍ଥିତିସଂହାରଣୀ ତୁମ୍ଭର ଖ୍ୟାତ
ବିଷ୍ଣୁର ତେଜରେ ତୁମ୍ଭେ ପ୍ରକାଶ, ନମୁଛି ତୁମ୍ଭଙ୍କୁ ମୁହିଁ ଅଶେଷ । ୧୭ ।
ତୁମ୍ଭେ ସ୍ୱଧା ସ୍ୱାହା ସ୍ୱରଜେ ପୁଣି, ଅର୍ଦ୍ଧ ମାତ୍ରାଙ୍କୁ ବହିଅଛ ଜାଣି
ତୁମ୍ଭେ ସାବିତ୍ରୀ ଯେ ଅଟ ଜନନୀ, ତୁମ୍ଭରେ ଧାରଣ ଯେହ୍ନେ ମେଦିନୀ । ୧୮ ।
କାଳରାତ୍ରି ମହାରାତ୍ରି ବୋଲାଅ, ତୁମ୍ଭେ ଈଶ୍ୱରୀ ଶ୍ରୀପ୍ରକାଶ ହୁଅ
ଲଜ୍ଜା ପୁଷ୍ଟି ତୁଷ୍ଟି ବୋଲାଅ ଜାଣ, ଖଡ୍ଗ ଶୂଳ ଚକ୍ର ବିରାଜେ ପୁଣ । ୧୯ ।
ଶଙ୍ଖ ଚାପ ବାଣ ଭୁଷଣ୍ଡି ଘେନ, ପରିଘ ଆଦି ଯେତେ ଶସ୍ତ୍ରମାନ
ପରମଈଶ୍ୱରୀ ତୁମ୍ଭେ ଯେ ଅଟ, କଞ୍ଚିତରେ କୃପା ମୋରେ ପ୍ରକଟ । ୨୦ ।
ବିଷ୍ଣୁଙ୍କ ଶରୀର ଗ୍ରହଣ କରି, ସଦାଶିବଙ୍କର ଅଟ ଈଶ୍ୱରୀ
ତୁମ୍ଭଙ୍କୁ ସ୍ତୁତି କରିବାରେ ଜାଣ, କେହି ସମର୍ଥ ନୁହନ୍ତି ପ୍ରମାଣ । ୨୧ ।
ଏ ବେନି ଅସୁରଙ୍କୁ କରି ଯେ ହତ, ତେଣେ ସୃଷ୍ଟି ହେବ ମୋ ଚରିତ
ଋଷି କହନ୍ତି ଦେବୀ ସ୍ତୁତି ଶୁଣି, ବିଷ୍ଣୁ ପ୍ରବୋଧ ହେଲେ ତତକ୍ଷଣି । ୨୨ ।
ବିଷ୍ଣୁ ଦେହରୁ ତେଜ ଉତପନ୍ନ, ଦେଖିଣ ବ୍ରହ୍ମା ଚକିତ ବଦନ
ସେ ତେଜ ପଞ୍ଚ ସହସ୍ର ବରଷ, ଦୈତ୍ୟ ସଙ୍ଗେ ସଂଗ୍ରାମ ବିଶେଷ । ୨୩ ।

Digitized by srujanika@gmail.com

ତା ଦେଖି ବିଷ୍ଣୁ କହିଲେ ତୁରିତେ, ଏ ବର ଦେଉଛ ଯେବେ ସୁଚିତେ
ଏମନ୍ତ ଋଷି ରାଜାଏ କହିଲେ, କମଳା ରକ୍ଷଣ ବରକୁ ଦେଲେ । ୨୪ ।
ପ୍ରଭୁ ବଚନ ଶୁଣି ଭଗବତୀ, ଶଙ୍ଖ, ଚକ୍ର, ଗଦା ଧରିଲେ ଧାଇଁ
କ୍ରୋଧ ହୋଇଣ ଚକ୍ରେ ଶିରଚ୍ଛେଦ, ଶିର ଜଘନକୁ ତୁରିତେ ଭେଦ । ୨୫ ।
ତା ଦେଖି ବ୍ରହ୍ମା ହରଷ ହୋଇଲେ, ଦେବୀଙ୍କି ବହୁତ ସ୍ତୁତି କି କଲେ
ମଧୁକୈଟଭ ବଧ ଆଖ୍ୟାନ, କର କୃପାନାଥ କହେ ରାଜନ । ୨୬ ।

—ପ୍ରଥମ ଆଖ୍ୟାନ ସମାପ୍ତମ୍—



## ଦ୍ୱିତୀୟ ଆଖ୍ୟାନ

(ଘୋଷା)

ଜୟ ଜୟ ସିଂହବାହିନୀ ଗଉରୀ, ଜୟ ଶଙ୍କର ଭବାନୀ
ପୁଣି ଦେବେ ତୋଷ ହେଲେ କୃପାଳୁ ଜାଣି
ପ୍ରସନ୍ନ ନିଶାକର ବଦନ ମନୋହର ହାର ଭୂଷଣ ଶୋଭିତେ
ଶିରରେ ଶୋଭିତ ଚନ୍ଦ୍ର ଝଟ ଝଟ କର୍ଣ୍ଣେ କୁଣ୍ଡଳ ଜୁଳିତେ
କଟୀରେ କଙ୍କିଣୀ ବାଜଇ ଝିଣି ଝିଣି ପାଦେ ନେପୁର ରଞ୍ଜିତେ
ମା'ଗୋ ମଂସା ସୈନ୍ୟ ବିନାଶିଲ ତୁରିତେ

(ପଦ)

ଋଷି କହୁଛନ୍ତି ଦେବତାସୁର, ଶତ ବରଷ ଯୁଦ୍ଧ ମହା ଘୋର
ଦେବ ଈଶ୍ୱର ଦୈତ୍ୟେଶ୍ୱର ଯୁଦ୍ଧ, ଦୈତ୍ୟେ ଜିଣିଲେ ହାରିଲେ ବିବୁଧ ।୧।
ମହିଷାସୁର ଭୟେ ବିବୁଧଗଣ, ପଦ୍ମଯୋନି ବ୍ରହ୍ମା ପାଦେ ଯାଇଣ
ସେଠାରେ ଅଛନ୍ତି ଗରୁଡ଼ଧ୍ୱଜ, ସମସ୍ତେ କହିଲେ ସଂସାର ତେଜ ।୨।
ସୂର୍ଯ୍ୟ, ଇନ୍ଦ୍ର, ଅଗ୍ନି, ଅନିଳ ଇନ୍ଦୁ, ଅନ୍ୟ ଦେବ ଯେତେ ଯମ ଯେ ସିନ୍ଧୁ
ଏମାନେ ସ୍ୱର୍ଗରୁ ଚ୍ୟୁତ ହୋଇଲେ, ମର୍ତ୍ତ୍ୟରେ ମାନବ ପରି ଭ୍ରମିଲେ ।୩।
ଅମରଗଣଙ୍କୁ ଚେଷ୍ଟାକୁ କହି, ଶରଣ ପଶିଲେ କାରୁଣ୍ୟ ହୋଇ
ଶ୍ରୀ ମଧୁସୂଦନ ଏ ବାଣୀ ଶୁଣି, ଅତି କ୍ରୋଧ ହେଲେ ଶ୍ରୀ ଚକ୍ରପାଣି ।୪।
ବିଷ୍ଣୁ, ବ୍ରହ୍ମା, ରୁଦ୍ର ମୁଖୁଁ ସମ୍ଭୂତ, ମହାଘୋର ତେଜ ହୋଇଲା ଜାତ
ଇନ୍ଦ୍ରଙ୍କୁ ଯେତେ ଯେତେ ଦେବ ଯେତେ, ସେହିପରି ତେଜ ହେଲା ବହନ ।୫।

Digitized by srujanika@gmail.com

ଅତି ଉଗ୍ରଙ୍କର ସେ ତେଜ ପୁଣି, ଦନ୍ଧ ଦେବ କିବା ପର୍ବତଶ୍ରେଣୀ
ସର୍ବଦେବ ତେଜ ଦେବତା ଦେଖି, ତିନି ଲୋକରେ ପ୍ରକାଶିଲା ଶିଖୀ ।୭।
ସେ ତେଜ ଦେଖି ଦେବତା ଆନନ୍ଦ, ମଂସାସୁର ସଙ୍ଗେ ଲଗାଏ ଦ୍ୱନ୍ଦ୍ୱ
ମହାଦେବ ଶୂଳଂ ଶୂଳ ଜନ୍ମିଲା, ପିନାକୀ ସେ ଶୂଳ ତାହାଙ୍କୁ ଦେଲା ।୭।
କୃଷ୍ଣ ସେହୁପରି ଚକ୍ରକୁ ଦେଇ, ଶଂଖ ଶକ୍ତି ଦେନି ବରୁଣ ତହିଁ
ଅଗ୍ନି ମରୁତ ଗୃପ ବାଣ ଦେଲେ, ତୂଣି ନେଇଣ କନ୍ଧରେ କଷିଲେ ।୮।
ଯେ ବଜ୍ର କୁଲୀଶ ଘଣ୍ଟାକୁ ପୁଣି, ଇନ୍ଦ୍ର ସମର୍ପିଲେ ତାହାଙ୍କୁ ଜାଣି
କାଳ ଦଣ୍ଡ ଯମ ଦଣ୍ଡ ଯେ ପାଶ, ଯମକାଳ ଦେଲେ ହୋଇ ସନ୍ତୋଷ ।୯।
ପ୍ରଜାପତି ଅକ୍ଷମାଳାକୁ ଦେଇ, ବ୍ରହ୍ମାକମଣ୍ଡଳୁ ଦେଲେକ ନେଇ
ସମସ୍ତ ରୋମ କୃଷ୍ଣ ରୂପେ ଜାଣି, ଦିବାକର ଦେଲେ ତେଜକୁ ପୁଣ ।୧୦।
କାଳ ଦେଲେ ଖଡ୍‌ଗ ଚର୍ମକୁ କର, କ୍ଷୀରସିନ୍ଧୁ ଦେଲେ ଅମ୍ବର ହାର
ଚୂଡ଼ାମଣି କୁଣ୍ଡଳକୁ ସମର୍ପି, ଅର୍ଦ୍ଧଚନ୍ଦ୍ର ଦେଲେ ମସ୍ତକେ ଥାପି ।୧୧।
କେୟୂର ନୂପୁର ମୁଦ୍ରିକା ଆଦି, ବିଶ୍ୱକର୍ମା ଦେଲେ ତାକୁ ସମ୍ପାଦି
ଅତ୍ୟନ୍ତ ନିର୍ମଳ ପରଶୁ ନେଇ, ଅନେକ ଶସ୍ତ୍ର କରେ ବିରାଜଇ ।୧୨।
ଜଳନିଧି ଦେଲେ ନିର୍ମଳମାଳା, କମଳ ହିଅନ୍ତେ ଲମ୍ବାଇ ଗଲା ।
ହିବଧରନ୍ତି ଯେ ସିଂହକୁ ଆଣି, ହିମାଳୟ ଦେଲେ ଦେବୀଙ୍କି ପୁଣି ।୧୩।
ପାନପାତ୍ରକୁ ଧନାଧିପ ଦେଇ, ଶେଷନାଗ ହାର ମଣି ଖଞ୍ଜଇ
ଆନ ଆନ ଦେବ ଭୂଷଣମାନ, ପାଇ ଅଟ୍ଟହାସ କଲେ ବହନ ।୧୪।
ଘୋର ନାଦରେ ଆକାଶ ପୂରିଲା, ନର ଲୋକଙ୍କର କ୍ଷୋଭ ହୋଇଲା
ସାଗର କମ୍ପିଲା ଅତି କାତରେ, ବସୁଧା ଚଳିଲେ ଘୋର ଭୟରେ ।୧୫।
ଦେବତାମାନେ ଆନନ୍ଦ ଲଭିଣ, ସିଂହବାହିନୀକି କହିଲେ ପୁଣ
ତ୍ରିଲୋକ ମଧ୍ୟେ ଅମର ବଇରୀ, ନାଶ କରି ରଖ ଏ ତିନି ପୁରୀ ।୧୬।
ମୁନିମାନେ ତହିଁ ସ୍ତୁତିକ କଲେ, ଲୋକ ଅଇରି ମଂସା ଯାଉ ଭଲେ
ଦେବଦେବୀଙ୍କର ସ୍ତୁତିକୁ ଶୁଣି, ମଂସାକୋପ କଲା ଏମନ୍ତ ହାଣି ।୧୭।
ଗର୍ଜିଲା ଦଇତ ନାଦକୁ କରି, ଦେବୀ ଦେଖିଣ କ୍ରୋଧ ହେଲେ ଭାରି
ଦଇତ ପାଦ ଗତିକ କରନ୍ତେ, ତାର ସଙ୍ଗେ ଯୁଦ୍ଧ କଲେ ତୁରିତେ ।୧୮।
ଶଂସାସୁର ସୈନ୍ୟ ଶସ୍ତ୍ରକୁ ଧରି, ଦେବଙ୍କ ଉପରେ କୋପେ ପ୍ରହାରି
ଲୀଳାରେ ଚଣ୍ଡିକା କଲେ ଛେଦନ, ତାହା ଦେଖି ମଂସା କୋପେ ବହନ ।୧୯।
ଶ୍ରାବଣ ମାସରେ ବୃଷ୍ଟି ପରାଏ, ଦୈତ୍ୟ ଶସ୍ତ୍ର ମାରି ଦେବୀଙ୍କ ଦେହେ
ଏମନ୍ତ ଜାଣି ଦେବୀଙ୍କ କେଶରୀ, ଦୈତ୍ୟଙ୍କ ହୃଦୟ ନଖେ ବିଦାରି ।୨୦।

Digitized by srujanika@gmail.com

ମହିଷାସୁର କ୍ରୋଧ ଦେଖି ତା ସୈନ୍ୟ, ଗଦାଶୂଳ କୁନ୍ତ ମାରି ବହନ
ଦେଖି କରି ଦେବୀ କୋପକୁ କରି, ତ୍ରିଶୂଳ ମାରଣ ସୈନ୍ୟ ବଦାରି ।୨୧।
ଅଗ୍ନି ଯେମନ୍ତ ପ୍ରାପ୍ତେ ବନ ଦହ୍ନ, କେଶରୀ ଦହନେ କୋପକୁ ବହ୍ନ
କେହୁ ଶୂଳଶକ୍ତି ଗଦାକୁ ମାରି, ଖଡ୍ଗେ ଦେବ ମଂଷାସୁର ସଂହାରି ।୨୨।
କେତେ ସେନାଙ୍କର ଭୁଜ ଛୁଟିଲା, କାହାର ମସ୍ତକ ତଳେ ଗଡ଼ିଲା
କବନ୍ଧମାନ ତହିଁ କଲେ ନୃତ୍ୟ, ଦେବୀ କହିଲେ ରହ ଆରେ ଦୈତ୍ୟ ।୨୩।
ଅଗ୍ନି ଯେଉଁ ପରି କାଷ୍ଠକୁ ଦହ୍ନ, ସେପରି ଦେବୀ ଦୈତ୍ୟକୁ ନାଶଇ
ଦେବୀଙ୍କ ସିଂହ ମହାନାଦ କଲା, ତାହା ରଡ଼ରେ ତ୍ରିପୁର କମ୍ପିଲା ।୨୪।
ମଂଷାସୁର ସୈନ୍ୟ ବଧକୁ ଗୃହିଁ, ଆନନ୍ଦ ଦେବତା ସମୂହ ହୋଇ
ଦେବୀଙ୍କ ଶିରେ ପୁଷ୍ପବୃଷ୍ଟି କଲେ, ସୋମନାଥ ନୃପ କୃପା ମାଗିଲେ ।୨୫।
ଇତିଶ୍ରୀ ଚଣ୍ଡୀମାହାତ୍ମ୍ୟେ ମହିଷାସୁର ସୈନ୍ୟ ବଧ ଦ୍ୱିତୀୟ ଆଖ୍ୟାନ

ସମାପ୍ତମ୍

●

# ତୃତୀୟ ଆଖ୍ୟାନ

ଘୋଷା—

ଜୟ ଜୟ ଭଗବତୀ ଗୋ ଅମ୍ବିକେ, ଜୟ ଈଶ୍ୱର ହୃଦ୍ୟାଳୀ,
ପୁଣି ବିପତ୍ତିନାଶିନୀ ଜୟ ତୁ କାଳୀ, ସଚପାଠ ।
କମ୍ବୁଶୋଭନୀ ଆର୍ତ୍ତିନାଶିନୀ ଦୁଷ୍ଟଦୈତ୍ୟ ନିବାରତେ ।
ପାଶଶୋଭନୀ ତ୍ରିପୁରମୋହନୀ ସର୍ପକୁଣ୍ଡଳ ରାଜତେ ।
ପୁଣି ଖଡ୍ଗେ ମଂଷାମୁଣ୍ଡ କାଟି ତୁରତେ ।

ପଦ—

ଋଷି କହନ୍ତ ସୈନ୍ୟହତ ଦେଖି, ମଂଷା କୋପିଲା ଦେବୀଙ୍କି ନିରେଖି,
ଶର ବୃଷ୍ଟି କଲା ଦେବୀ ଉପରେ, ଯେହ୍ନେ ଜଳ ବୃଷ୍ଟି ମେରୁଶିଖରେ ।୧।
ଲୀଳା ମାତ୍ରେ ଦେବୀ ଶରକୁ ଛେଦ, ଅଶ୍ୱ ସାରଥିକୁ ଶରରେ ବିନ୍ଧ
ଧନୁ ଛୁଟିଗଲା ବିରଥୀ ହେଲା, ଖଡ୍ଗ ଚର୍ମେ ଧରି ଦୈତ୍ୟ ଧାଇଁଲା । ୨ ।
ଖଡ୍ଗରେ ସିଂହକୁ ପ୍ରହାର କରି, ଦେବୀ ଦେଖିକରି ତାକୁ ଆବୋରି,
ଶରକୁ ଅସ୍ତ୍ରରେ ମାରିଲେ ପୁଣି, ଫସାର ଶକ୍ତିକୁ ଛେଦିଲେ ଜାଣି । ୩ ।
ଏଥୁ ଅନ୍ତେ ବାହୁ ବୃଷକୁ କରି, ଅତି ଦାରୁଣ ପ୍ରହାର ଯେ ଭାରି ।
ଶୂନ୍ୟରେ ଜାଣଇ ଅତ୍ୟନ୍ତ ଦ୍ୱନ୍ଦ୍ୱ, ବାହୁରେ ବାହୁରେ କଲେ ସେ ଯୁଦ୍ଧ ।୪।

Digitized by srujanika@gmail.com

ଦଇତ ମହିଷ ରୂପକୁ ଧରି, ଶୃଙ୍ଗରେ ପୁଚ୍ଛରେ ଯୁଦ୍ଧକୁ କରି,
ସେହି କାଳେ ଦେବୀ କୋପ ବହିଲେ, ଶୂଳ ଧରି କରି ବେଗେ ପିଟିଲେ ।୫।
ସେ କାଳରେ ମଂସା କ୍ରୋଧକୁ ବହି, ତାହା ଜାଣି ଦେବୀ ଦୈତ୍ୟକୁ କହି,
ରହ ରହ ମୂଢ଼ କ୍ଷଣମାତ୍ରକ, ମଧୁପାନ କରି କାଟିବି ବେକ ।୬।
ଦେବତାମାନେ ସନ୍ତୋଷ ହୋଇବେ, କ୍ଷଣେ ରହ ଦୈତ୍ୟ ନାଶିବି ଏବେ
ଋଷି କହନ୍ତି ରାଜା ଏହା ଶୁଣ, ଦେବୀ ପାଦ ଦେଲେ ମଂସା କନ୍ଧେଣ ।୭।
ଶୂଳ ଧରି କରେ ହୃଦେ ପ୍ରହାର, ପାଦରେ ଚାପିଲେ କ୍ରୋଧେ ଗହର ।
ଦଇତ ଆଉ ଚଳି ନ ପାରିଲେ, ଖଡ଼୍‌ଗ ଧରି ଦେବୀ ଶିର ଛେଦିଲେ ।୮।
ହାହାକାର କଲେ ଦେଖିଣ ସର୍ବେ, ଦେବତା ଆନନ୍ଦ ଲଭିଲେ ତେବେ ।
ଦେବତା ସଙ୍ଗେ ଦେବୀ ସ୍ତୁତି କଲେ, ଗନ୍ଧର୍ବ ପ୍ରଭୃତି ନୃତ୍ୟ ଆରମ୍ଭିଲେ ।୯।
ଅପସରମାନେ ଅତି ହରଷେ, ତହିଁ ନୃତ୍ୟ କଲେ ଗାୟନ ରସେ ।
ଦେବୀ ପାଦ ଧ୍ୟାଇ ମାଗଇ ବର, କହେ ସୋମନାଥ ମୋ ଖେଦ ହର ।୧୦।

ଇତି ଶ୍ରୀ ଚଣ୍ଡୀମହାତ୍ମ୍ୟ ମହିଷାସୁର ବଧ ମାଳଶ୍ରୀ ତୃତୀୟ ଉପାଖ୍ୟାନ ସମାପ୍ତ ।



## ଚତୁର୍ଥ ଆଖ୍ୟାନ

ଘୋଷା—

ଜୟ ଜୟ ହେ ମଂଗଳା ମଙ୍ଗଳେ । ଜୟ କନକବରଣୀ
ପୁଣି ଅମର ତୋଷିଲ ଦୈତ୍ୟକୁ ହାଣି । ଇତି ପାଠ ।
ମୁକୁଟଧାରିଣୀ ଇନ୍ଦୁହାସିନୀ କୁନ୍ଦଦନ୍ତୀ ମନ୍ଦ ହସିତେ
ପିନ୍ଧି କାଞ୍ଚୁଣି ରୁଦ୍ରମୋହିନୀ ପୀନଜଘନ ଅତି ବନ୍ଦିତେ ।
ପୁଣି ଦେବେ ହବ ଦେଇ ତୋଷି ତୁରିତେ ।

ପଦ—

ଋଷି କହିଲେ ସୁରଥ ଶୁଣ
ଇନ୍ଦ୍ରାଦି ଦେବତା ସ୍ତୁତି କରଣ
ଯାହାର ପ୍ରଭାବ ଯେ ବିଷ୍ଣୁ, ବ୍ରହ୍ମା
ରୁଦ୍ର ନ ଜାଣନ୍ତି ତାଙ୍କ ଗାରିମା । ୧ ।

Digitized by srujanika@gmail.com

ଅଖିଳ ଜଗତ ପାଳଇ ସେହୁ
ସୁକୃତ ଜନକ ଗୃହରେ ଯେହୁ
ସେହୁ ଲକ୍ଷ୍ମୀ ପାପୀଜନଙ୍କ ବୁଦ୍ଧି
ଉତ୍ତମ କୁଳରେ ଲଜ୍ଜା ପ୍ରସିଦ୍ଧି । ୨ ।

ସେ ଦେବୀ ରୂପ ଅଟଇ ଅଚନ୍ତ୍ୟ
ଅସୁର କ୍ଷୟରେ ଅତ୍ୟନ୍ତ ଚତ୍ତ
ସ୍ୱାହା ଅଟେ ସେହୁ ମଙ୍ଗଳରୂପୀ
ମୋକ୍ଷାଦ୍ଦ ଦଅନ୍ତି ନୁହନ୍ତି ସେ କୋପୀ । ୩ ।

ଶବ୍ଦରୂପୀ ସେହୁ ଅତି ନିର୍ମଳ
ଦୁର୍ଗା ଅଟେ ସେହୁ ଅତି ଚଞ୍ଚଳ
ଅଖିଳ ଶାସ୍ତ୍ରର ସାର ଅଟନ୍ତି
ତିନି ଗୁଣକୁ ସେ ଧରିଅଛନ୍ତି । ୪ ।

ମଧୁସୂଦନ ହୃଦେ କରି ବାସ
ଶ୍ରୀରୂପରେ ତହିଁ ହୋଇ ପ୍ରକାଶ
ଚନ୍ଦ୍ରମଣ୍ଡଳର ଅଟ ସ୍ୱରୂପା
ଈଷିତ ହାସ ଇନ୍ଦୁ ପରମାଣି । ୫ ।

ହେ ଦେବୀ ପ୍ରସନ୍ନେ କୋପକୁ ହର
ତୁମ୍ଭେ ଯଶ, ବର, ଦୟା ଯେ କର
ହେ ଦୁର୍ଗା ଦୁର୍ଗତି ନାଶ ଆମ୍ଭର
ମଂସାସୁର ଆଦି ବଳ ସଂହାର । ୬ ।

ଯାହାର ଅଟଇ ଖଡ୍ଗ ପ୍ରଭା
ଶୂଳ ଅଟଇ ଅତି କାନ୍ତି ଆଭା
ହେ ଦେବୀ ଦୁର୍ବୁଦ୍ଧି ଲୋକଙ୍କୁ ନାଶ
ବେଗେ ଯାଉ ଆମ୍ଭ ହୃଦରୁ ତ୍ରାସ । ୭ ।

ଅଖିଳ ତ୍ରିପୁର ଶତ୍ରୁକୁ ଗ୍ରାସି
ରିପୁଗଣ ଶିର ଖଡ୍ଗରେ ନାଶି
ଦେବତାଙ୍କ ଚିତ୍ତ ହରଷ କଲ
ଶୂଳରେ ଅମରପୁର ରଖିଲ । ୮ ।

Digitized by srujanika@gmail.com

ଖଡ଼୍‌ଗ ଘଣ୍ଟା ମୁନେ ରଖ ଆମ୍ଭଙ୍କୁ
ଗୃପ ଧ୍ୱନରେ ସମ୍ଭାଳ ସ୍ୱର୍ଗକୁ
ଯେ ପୂର୍ବ ପଶ୍ଚିମ ଦକ୍ଷିଣ ଦଗେ
ଚଣ୍ଡିକା ରଖନ୍ତୁ ଏ ଦଗ ଭାଗେ । ୯ ।
ଈଶ୍ୱର ରଖନ୍ତୁ ଉତ୍ତର ଦଗେ
ଋଷି କହୁଛନ୍ତି ଦେବ ତା ବେଗେ
ନନ୍ଦନରୁ କୁସୁମ ଆଣି ସଗେ
ବୃଷ୍ଟି କଲେ ଦେବେ ଦେବୀଙ୍କ ଆଗେ । ୧୦ ।
ଦୁଷ୍ଟ ଦୈତ୍ୟ ନାଶି ରଖି ଦେବଙ୍କୁ
ଶୁମ୍ଭ ନଶୁମ୍ଭ ବେନ ଅସୁରଙ୍କୁ
ନାଶିଣ ଲୋକଙ୍କୁ ପାଳନା କର
କହେ ସୋମନାଥ ବୃପତ୍ତି ହର । ୧୧ ।

ଇତ ଶ୍ରୀ ଚଣ୍ଡୀମହାତ୍ମ୍ୟେମ୍ବକାଦ ଭୁ ଷ୍ଟି ମାଳଶ୍ରୀ ଚତୁର୍ଥ ଆଖ୍ୟାନ ସମାପ୍ତ ।



## ପଞ୍ଚମ ଆଖ୍ୟାନ

ଘୋଷା—

ଜୟ ଜୟ ବିଷ୍ଣୁ ହୃଦୟସ୍ଥାୟିନୀ, ଜୟ ଗୋ ଶ୍ରୀସ୍ୱାଶୋଭନୀ
ପୁଣି ବବୁଧମାନଙ୍କ ସୁଖଦାୟିନୀ । ଇତ ପାଠ ।
କାଳନାଶିନୀ ଅଟ୍ଟହାସିନୀ ପ୍ରକାଶ ବଦୁ ପର କାନ୍ତରେ ।
ଘଣ୍ଟା ଧ୍ୱନ କରେ ଦଇତ ଚତ୍ତ ଥରେ ହୃଦୟ କମ୍ପାଇ କାତରେ ।
ଶୁଣି ମୋ ମନୋରଥ ଯେ ପୂରୁ ସତ୍ୱରେ । ୦ ।

ପଦ—

ଋଷି କହୁଛନ୍ତି ରାଜନ ଶୁଣ
ପୂର୍ବକାଳେ ଶୁମ୍ଭ ନଶୁମ୍ଭ ଜାଣ
ଗର୍ବବଳେ ସେହୁ ତ୍ରୈଲୋକ୍ୟ ହବ—
ହରିଲେ ସେ ଦୈତ୍ୟ ମନରେ ଭାବ । ୧ ।
ଚନ୍ଦ୍ର ସୂର୍ଯ୍ୟ ଅଗ୍ନି ଦେବତା ଆଦ
ଯେତେ ଅଧିକାର ନେଲେ ଦୁର୍ବୁଦ୍ଧି
ତ୍ରିଦଶ ଦେବତା ଚନ୍ତାକୁ ପାଇ
ଦେବଙ୍କ ହୃଦରେ ତକ୍ଷଣେ ଧାଇ । ୨ ।

Digitized by srujanika@gmail.com

ଦୈତ୍ୟ ନାଶ ଅର୍ଥେ ଦେବତାଗଣ
ଗିରିରାଜ ହିମବନ୍ତେ ଯାଇଣ
ଯେ ଦେବୀ ଅଟନ୍ତି ବିଷ୍ଣୁର ମାୟା
ଦେବେ ସ୍ତୁତି କଲେ ହେ ମାୟା ମାୟା । ୩ ।

ନମୋ ମହା ଦେବୀ ନମସ୍ତେ ଦେବୀ
ଶିବଘରଣୀ ସଦାକାଳେ ଶିବ
ତୁମ୍ଭେ ପ୍ରକୃତି ଅଟ ରୁଦ୍ରରୂପୀ
ରୁଦ୍ରଘରଣୀ ଗଉରୀ ପ୍ରତାପୀ । ୪ ।

ତୁମ୍ଭେ ଅଟଇ ରୂପିଣୀ ମାତ
କଲ୍ୟାଣୀ, ଭଦ୍ରାଣୀ ଜଗତେ ଖ୍ୟାତ
ଲକ୍ଷ୍ମୀ ରୂପକୁ ତୁମ୍ଭେ ଧରିଅଛ
ନମୋ ନମୋ ମାତ ସୃଷ୍ଟି ରଖିଛ । ୫ ।

ତୁମ୍ଭେ ଅଟ ଦୁର୍ଗା ଦୁର୍ଗତି ନାଶ
ଧୂମ୍ର କୃଷ୍ଣା ରୂପ ଅଟେ ବିଶେଷ
ତୁମ୍ଭଙ୍କୁ ଆମ୍ଭର ଯେ ବାରମ୍ବାର
ନମୁଛୁ ଜନନୀ ତୁମ୍ଭ ପୟର । ୬ ।

ତୁମ୍ଭେ ଚେତନା, ବୁଦ୍ଧି ରୂପ ଜାଣ
ନିଦ୍ରା, କ୍ଷୁଧା ରୂପ ଅଟେ ପ୍ରମାଣ
ଶକ୍ତି ରୂପେ ପୁଣି ତୁମ୍ଭେ ରହିଛ
ତୃଷ୍ଣା ରୂପକୁ ଆପଣ ବହିଛ । ୭ ।

ଲଜ୍ଜା, ଶାନ୍ତି ରୂପ ଅଟ ପ୍ରଧାନ
ଶ୍ରଦ୍ଧା, କାନ୍ତିରେ ଯା ତନୁ ବିଧାନ
ଶ୍ରୁତି ରୂପେ ଦୟା ପ୍ରକାଶ କରି
ତୁଷ୍ଟେ ମାତୃ ରୂପ ନାମ ତୁମ୍ଭର । ୮ ।

ଇନ୍ଦ୍ରିୟ ଭୂତଙ୍କ ଅଟ କାରିଣୀ
ଋଷି କହିଲେ ସୁରଥରେ ପୁଣି
ଏମନ୍ତେ ଦେବତା ସ୍ତୁତି କି କଲେ
ଶୁଣିଣ ଦେବୀ ଅତି କୋଧ ହେଲେ । ୯ ।



Digitized by srujanika@gmail.com

ହେ ନୃପନନ୍ଦନ ସେଠାରୁ ଯାଇ
ଗଙ୍ଗାରେ ସ୍ନାନ କଲେ ମହାମାଇ ।
ଦେବତାମାନଙ୍କ ସ୍ତୁତି କହିଲେ
ଶୁମ୍ଭ ଶୃଷ୍ଟିରେ ଦୈତ୍ୟ ମଲ୍ଲ ଭଲେ । ୧୦ ।

କାଳିକା ରୂପକୁ ଧାରଣ କରି
ହିମାଚଳକୁ ଚଳିଲେ ଗଉରୀ ।
ଅମ୍ବିକା ରୂପକୁ ସେହୁ ଧରଣ
ଅତ୍ୟନ୍ତ ସୁନ୍ଦର ପ୍ରକାଶି ପୁଣ । ୧୧ ।

ଭୃତ୍ୟ ଚଣ୍ଡ ଆଦି ଶୁମ୍ଭ ନିଶୁମ୍ଭ
ଦେଖିଲା ଦେବୀଙ୍କି ଅତି ଆରମ୍ଭ
ଦୂତଙ୍କୁ ସ୍ତୁତି ଶୁମ୍ଭ ଦୈତ୍ୟ କହି
ଅତ୍ୟନ୍ତ ସୁନ୍ଦର ମନକୁ ମୋହି । ୧୨ ।

ପୂର୍ବେ ଏମନ୍ତ ଯେ ଗିରି ଉପରେ
ସ୍ତ୍ରୀ ଶ୍ରୀ ରତ୍ନ ଦେଖା ନାହିଁ ନେତ୍ରରେ
ଏମନ୍ତ ଭାଳି ଦୂତଙ୍କୁ ପେଷିଲା
ଦେଖି ଆସ କି ବୋଲିଣ ବୋଇଲା । ୧୩ ।

ଦୈତ୍ୟ ଆଜ୍ଞା ଘେନି ଦୂତ ଚଳାଇ
ଦେବୀଙ୍କ ପାଶରେ ମିଳିଲା ଯାଇ
ଦେବୀଙ୍କି କହିଲା ଶୁଣ ବଚନ
ଦଇତ ଦେଖିଲା ରୂପ ରତନ । ୧୪ ।

ଯେତୁ ଗଜ, ରତ୍ନ, ପାରିଜାତକ
ଇନ୍ଦ୍ରଙ୍କଠାରୁ ହରିଚ ଏତେ
ହଂସଯୁକ୍ତ ଅଟେ ଯେତୁ ବିମାନ
ତାର ଅଗଣାରେ ଅଛୁ ସେ ପୁଣ । ୧୫ ।

ବ୍ରହ୍ମାଙ୍କଠାରୁ ତାହାକୁ ଆଣିଛୁ
ଛନ୍ଦ ପଦ୍ମ ବେନି ଗୃହେ ରଖିଛୁ
କୁବେର ବରୁଣଠାରୁ ଆଣିଲା
ଅନ୍ୟ ଦେବଙ୍କର ଦ୍ରବ୍ୟ ହରିଲା । ୧୬ ।

Digitized by srujanika@gmail.com

ସ୍ଥିର ରତ୍ନ ବୋଲ୍ ତୋ ଠାକୁ ମୋତେ
ପେଶିଅଛୁ ଜାଣ ଶୁମ୍ଭ ଭୂଶତେ
ତାକୁ ବରଲେ ସର୍ବ ରତ୍ନମାନ
ଭୋଗ କରିବୁ ତୁ ନାରୀ ରତନ । ୧୭ ।
ଶୁଣି କର ଦେବୀ ଦୂତକୁ କହି
ଯେ ଯୁଦ୍ଧେ ଜିଣିବ ମୋ ଭର୍ତ୍ତା ସେହି ।
ଏହା କହି ଦେବୀ ସେଠାରୁ ଗଲେ
ଗଙ୍ଗାର ଅନ୍ତଃପୁରରେ ମିଳଲେ । ୧୮ ।
ଏମନ୍ତ ବାଣୀ ଶୁଣି କର ଦୂତ
ଦେବୀଙ୍କି ଗୃହି କହିଲା ଭୂରତ
ଇନ୍ଦ୍ରାଦି ଦେବତା ଶୁମ୍ଭ ଆଗରେ
ସମାନ ନୁହନ୍ତି ଯେଉଁ ସମରେ । ୧୯ ।
ଦେବୀ କହିଲେ ଦୂତକୁ ଗୃହିଁଣ
ଶୁମ୍ଭାଦି ଦୈତ୍ୟ ଆଗେ କହ ପୁଣ
ତାଙ୍କ ପ୍ରତିଜ୍ଞାକୁ କରନ୍ତୁ ସେହି
କହିଣ ଦେବୀ ଅନ୍ତଃପୁର ଯାଇ । ୨୦ ।
କହନ୍ତି ଦୂତ ଦେବୀ କଥା ଶୁଣି
ସ୍ଥିର ହୋଇ ରଣେ ଗୁମାନ ପୁଣି
ଦେବୀଙ୍କି ଧାଇଲେ ତାପ ନ ରହେ
ନୃପ ସୋମନାଥ ଏମନ୍ତ କହେ । ୨୧ ।

ଇତି ଶ୍ରୀ ଚଣ୍ଡୀମହାତ୍ମ୍ୟେ ଦୂତବାକ୍ୟ ମାଳଶ୍ରୀ ପଞ୍ଚମ ଆଖ୍ୟାନ ସମାପ୍ତ ।



## ଷଷ୍ଠ ଆଖ୍ୟାନ

ଘୋଷା—

ଜୟ ଜୟ ଗିରିନନ୍ଦିନୀ ସୁମୁଖୀ ଜୟ ଦାନବଦଳିନୀ
ପୁଣି କୃପା କରିଥିବ ଭକ୍ତଙ୍କୁ ଜାଣି । ଇତି ପାଠ ।
ସତ୍ୟଧାରିଣୀ ପାପନାଶିନୀ କାଳରୂପିଣୀ ଚଣ୍ଡିକେ
ଅନେକ ରୂପ ଧର କାମ ପୂର୍ଣ୍ଣ କର ବନ୍ଦିସିନ୍ଦୁର ମସ୍ତକେ ।
ମାଗୋ ଧୂମ୍ରକୁ ନାଶିଲ କ୍ଷଣମାତ୍ରକେ ।

Digitized by srujanika@gmail.com

ପଦ—

ଋଷି କହୁଛନ୍ତି ରାଜନେ ଘେନ
କ୍ରୋଧରେ ଲେଲା ଦୂତ ବଚନ
ଦୈତ୍ୟ ରାଜାକୁ ବସ୍ତ୍ରାଶଣ କହୁ
ଦୂତ ବାଣୀ ଶୁଣି କୋପକୁ ବହୁ । ୧ ।

ଧୂମ୍ରଲୋଚନକୁ କହିଲା ବାଣୀ
ସୈନ୍ୟ ଧରି ଯାଅ ତା ପାଶେ ପୁଣି
କେଶ ଧରି ତାକୁ ମୋ ପାଶେ ଆଣ
କେ ଅଛୁ ତାହାର ରୁହିବା ଠାଣ । ୨ ।

ଅମର ଗନ୍ଧର୍ବ ଯକ୍ଷ ହୋଇଲେ
ନଷ୍ଟସ୍ତ ନାଶିବ ତାହାକୁ ଭଲେ
ଆଜ୍ଞା ଶୁଣି କରି ଧୂମ୍ରଲୋଚନ
ଷାଠିଏ ସହସ୍ର ଘେନଣ ସୈନ୍ୟ । ୩ ।

ହିମାଳୟ ପୁରେ ଦେବୀଙ୍କି ଦେଖି
ଉଚେ କହିଲା ଶୁଣ ରେ ସୁମୁଖୀ ।
ଶୁମ୍ଭ ନିଶୁମ୍ଭ କହୁଛନ୍ତି ଘେନ
ଭର୍ତ୍ତା କରି ତାଙ୍କୁ ବର ବଚନ । ୪ ।

ନୋହିଲେ କେଶ ଧରି ତୋର ନେବୁ
ରାଜା ଆଜ୍ଞା ଅଛୁ ଏହା କରିବୁ
ଦେବୀ କହିଲେ ସୈନ୍ୟ ଧରି ତୋର
ଯାହା ରୁ କରିବୁ କର ଅସୁର । ୫ ।

କ୍ରୋଧ କରି ଧୂମ୍ରେ ଏମନ୍ତ କହୁ
ହୁଂକାର ନାଦେ ଦେବୀ ଦୈତ୍ୟ ଦହୁ
ଏହା ଦେଖି ସୈନ୍ୟ କ୍ରୋଧ ହୋଇଲେ
ଦେବୀଙ୍କ ପରେ ଶର ବୃଷ୍ଟି କଲେ । ୬ ।

ଦେବୀଙ୍କ ବାହନ ଯେ ମହାସିଂହ
ସଟା କମ୍ପାଇ କଲା ଅତି କୋହ
ଦନ୍ତ ପ୍ରହାରେ ଦୈତ୍ୟ ନାଶ କଲା
ହୃଦ ବିଦାରିଲା ନଖେ କେଶରୀ । ୭ ।

Digitized by srujanika@gmail.com

ପାଦେ ପ୍ରହାରଣ ଶିର କାଟିଲା
ଦୈତ୍ୟଙ୍କ ରୁଧିର ପାନକୁ କଲା
ଏମନ୍ତ ବାଣୀ ଦୈତ୍ୟ ରଜା ଶୁଣି
ଧୂମ୍ରଲୋଚନ ସୈନ୍ୟ ମଲେ ପୁଣି । ୮ ।

ଜାଣି ଶୁମ୍ଭ ଦୈତ୍ୟ କୋପକୁ କଲା
ଚଣ୍ଡମୁଣ୍ଡକୁ ଗୁହିଁଣ କହିଲା
ଦେବୀଙ୍କୁ ଧରଚ ତା କେଶ ଧରି
ମୋର ପାଶକୁ ଆଣ ବେଗ କରି । ୯ ।

ଏ ବାଣୀ ଶୁଣି ସୈନ୍ୟ ଘେନଗଲେ
ଦେବୀ ସିଂହରେ ସର୍ବେ ହତ ହେଲେ ।
ଯେ ଦେବୀ ଅମ୍ବିକା କରୁଣାଦାୟୀ
ସୋମନାଥ ନୃପ ସେ ପାଦେ ଧ୍ୟାଇ । ୧୦ ।

ଇତି ଶ୍ରୀ ଚଣ୍ଡୀମହାତ୍ମ୍ୟେ ଧୂମ୍ରଲୋଚନ ବଧ ମାଳଶ୍ରୀ ଷଷ୍ଠ ଆଖ୍ୟାନ ସମାପ୍ତ ।



## ସପ୍ତମ ଆଖ୍ୟାନ

ଘୋଷା—

ଜୟ ଜୟ ମାତା ତ୍ରିଶୂଳଧାରିଣୀ ଜୟ ଭଇରବୀ କାଳୀ
ପୁଣି ଦୈତ୍ୟ ବୃନ୍ଦ ଶସ୍ତ୍ରେ ପକାଅ ଦଳି । ଇତି ପାଠ ।
ଦନ୍ତ କଟକଟ ଗ୍ରୀବାଇ ଝଟମଟ ଜିହ୍ୱା ଲହଲହ ତେଜରେ
ପାଦେ ନୂପୁର ବାଜନ୍ତେ ଅତି ଜୋର ତ୍ରିପୁର କମ୍ପଇ ଧ୍ୱନିରେ
ପୁଣି ଚଣ୍ଡମୁଣ୍ଡ କାଟି ଧଇଲ କରେ ।

ପଦ—

ଋଷି କହୁଛନ୍ତି ରାଜନ ଶୁଣ
ଆଜ୍ଞା ଦେଲା ଶୁମ୍ଭ ନିଶୁମ୍ଭ ପୁଣ ।
ଚଣ୍ଡମୁଣ୍ଡକୁ ଗୁହିଁଣ କହିଲା
ଶସ୍ତ୍ର ଘେନି ସୈନ୍ୟ ଚଳ ବୋଇଲା ।୧।

Digitized by srujanika@gmail.com

ବାଣୀ ଶୁଣି ଦୈତ୍ୟ ସେଠାରେ ଚଳି
ହ୍ରମବନ୍ତ ପାଶେ ଯାଇଣ ମିଳି ।
ସେଠାରେ ଉନ୍ନତ ଶୃଙ୍ଗ ପରେ ଦେଖି
ସିଂହ ଉପରେ ଦେବୀଙ୍କି ନିରେଖି ।୨।

ଚାପ କର୍ତ୍ତୀ ଗଦା ଅସି ସ୍ତ୍ରଶୂଳ
ହସ୍ତେ ଧରି ଦୈତ୍ୟ ଅତ୍ୟନ୍ତ ଗୋଳ
ଦୈତ୍ୟଙ୍କୁ ଦେଖି ଦେବୀ କୋପ ବହି
ଖଡ୍ଗ ପରି ତେଜ ପ୍ରକାଶ ତହିଁ ।୩।

ନେତ୍ରେ ଭ୍ରୂକୁଟିକି ବିକଟ କରି
କଜ୍ଜଳ ବଦନ କାଳୀ ବିସ୍ତାରି
କରରେ ଖଟ୍ବାଙ୍ଗ ଧରିଅଛନ୍ତି
ନର ମୁଣ୍ଡମାଳା ହୃଦରେ ସ୍ଥିତି ।୪।

ଦୁଇ ଚର୍ମକୁ ପରିଧାନ କରି
ଅତି ଭୟଙ୍କର ରୂପ ବିସ୍ତାରି
ଅତ୍ୟନ୍ତ ବିସ୍ତାର ଅଟଇ ମୁଖ
ଜିହ୍ୱା ଲହ ଲହ ତହିଁ ପ୍ରତ୍ୟକ୍ଷ ।୫।

ରକ୍ତ ବର୍ଣ୍ଣେ ନେତ୍ର ପ୍ରକାଶି ଅଛୁ
ନାଦେ ସର୍ବଦିଗ ପୂରି ଯାଉଛୁ
ତାଙ୍କ ପାଖେ ଥିଲେ କେତେ ଅସୁର
ଶସ୍ତ୍ରକୁ ପ୍ରହାର କ୍ରୋଧ ଯେ ଘୋର ।୬।

ସୁର ଅଇର ଅସୁରଙ୍କୁ ରଖି
ପଦାଘାତରେ କେତେ ଦୈତ୍ୟ ଦୁଃଖୀ
ହସ୍ତେ ଧରି ତାଙ୍କୁ ମୁଖେ ପକାନ୍ତି
ହସ୍ତୀ ରଥ ଅଶ୍ୱ କେତେ ନାଶନ୍ତି ।୭।

ଯୁଦ୍ଧେ ଅସୁର ବଳ ହତ କରି
କଞ୍ଚିତ କୋପରେ ତାଙ୍କୁ ସଂହାରି
କେଶ ଶିର ଧରି ଦୈତ୍ୟଙ୍କୁ ପୁଣି
ପାଦେ ମର୍ଦ୍ଦି ଦ୍ୟନ୍ତି ଦାନବଶ୍ରେଣୀ ।୮।

Digitized by srujanika@gmail.com

ଖଡ୍‌ଗେ ପାଦେ ଦନ୍ତେ ସବ ଦଇତ
 କ୍ଷଣକେ ଦେବୀ ତାଙ୍କୁ କଲେ ହତ
ଚଣ୍ଡ ଦେଖି କରି କୋପ ବହିଲା
କାଳୀଙ୍କ କୋପେ ସୈନ୍ୟ ନାଶ ଗଲା ।୯।
ଧନୁ ଧରି କରେ ଦେବୀ ଉପରେ
ଶର ବୃଷ୍ଟି କଲା ଅତି ସତ୍ୱରେ
ଚକ୍ରରେ ଦେବୀ ଖରି ଶର ଛେଦ
ସୂର୍ଯ୍ୟକିରଣ ପରି ତେଜ ଭେଦ ।୧୦।
ଘନ ଗର୍ଜନ ପରି ଦେବୀ ଗର୍ଜି
ଅଟ୍ଟହାସେ ଦୈତ୍ୟ ଗର୍ବକୁ ଗଞ୍ଜି
କାଳୀ ବିକଟ ବଦନ ପ୍ରକାଶି
ଦଶନ ଜଳଇ କି ତେଜରାଶି ।୧୧।
ସିଂହ ପରେ ବସି ବେଗେ ଧାଇଁଲେ
ଚଣ୍ଡ କେଶ ଧରି ଖଡ୍‌ଗେ ଛେଦିଲେ
ମୁଣ୍ଡ ଖଣ୍ଡ ଖଣ୍ଡ ଚଣ୍ଡର ଦେଖି
ହତ ସୈନ୍ୟ ହେଲା ତାହା ନରେଖି ।୧୨।
ମୁଣ୍ଡ ଖଡ୍‌ଗ ଧରି ଦେବୀପାଶରେ
ଭୟ ରୂପେ ଦେଖେ ପଳାଏ ଦୂରେ
କାଳୀ ଚଣ୍ଡମୁଣ୍ଡ ହସ୍ତେ ଧଇଲେ
ଅଟ୍ଟହାସକୁ ତହିଁ ପ୍ରକାଶିଲେ । ୧୩ ।
ରଣଯଜ୍ଞରେ ଚଣ୍ଡମୁଣ୍ଡ ନାଶି
ଲଳିତ ବଚନ ଦେବୀ ପ୍ରକାଶି
ଋଷି କହିଲେ ଯେ ରାଜନ ଶୁଣ
ସେଦିନ ଚାମୁଣ୍ଡା ନାମ ପ୍ରମାଣ । ୧୪ ।
ଚଣ୍ଡୀଙ୍କ ପ୍ରତାପ ଏହା ଯେ ଯେନ
ଶତ୍ରୁରୁ ରିପୁନ୍ତି କରେ ଦହନ
ସୋମନାଥ ନୃପ ବିସ୍ମିତ ଚିତ୍ତେ
ଦେବୀ ପାଦ ଧ୍ୟାଇ ଅନୁବରତେ । ୧୫ ।

ଇତି ଶ୍ରୀ ଚଣ୍ଡୀମାହାତ୍ମ୍ୟେ ଚଣ୍ଡମୁଣ୍ଡ ବଧ ମାଳଶ୍ରୀ ସପ୍ତମ ଆଖ୍ୟାନ୍ ସମାପ୍ତ ।



Digitized by srujanika@gmail.com

## ଅଷ୍ଟମ ଆଖ୍ୟାନ

ଘୋଷା—

ଜୟ ଜୟ ମହାକୋପୀ ଗୋ ଚାମୁଣ୍ଡେ ଜୟ ମହାକାଳୀ ଚଣ୍ଡୀ
ପୁଣି ଦୈତ୍ୟ ରକ୍ତପାନେ ଶିରକୁ ଖଣ୍ଡି । ଇତ୍ଥ ପାଠ ।
ଅମର ତାରଣୀ ବଜ୍ରଧାରଣୀ ଗଜବାହନୀ ଶ୍ରୀପିତେ
କାଳନାଶିନୀ ରୁଦ୍ରରୂପିଣୀ ଶରଣ ରକ୍ଷଣୀ ଭୁବନେ
ପୁଣି ଅନେକ ରୂପ ଧଇଲ କଳ୍ପତେ । ପଦ ।

ଋଷି କହୁଛନ୍ତି ଶୁଣ ରାଜନ
ଚଣ୍ଡମୁଣ୍ଡ ହତ ଶୁଣିଣ ପୁଣ
ଦଇତରାଜ ଶମ୍ଭୁ କୋପ କଲା
ସମସ୍ତ ସୈନ୍ୟଙ୍କୁ ଆଜ୍ଞା ଯେ ଦେଲା । ୧ ।

ପଞ୍ଚାଶ କୋଟି ସୈନ୍ୟଙ୍କୁ ଯେ ଚାହିଁ
ମୋ ଆଜ୍ଞା ଯେନ ଯାଅ ବେଗ ହୋଇ
ଅସୁରପତ ଯେ କୋଧକୁ କରି
ସୈନ୍ୟକୁ ପେଶିଲା ମନେ ବିଚାରି । ୨ ।

ଭୟଙ୍କର ସୈନ୍ୟ ଚଣ୍ଡିକା ଚାହିଁ
ଧନୁଗୁଣ ଶବ୍ଦେ କମ୍ପିଲା ମହି
ଚଣ୍ଡିକା କୋପିଲେ ଏମନ୍ତ ଜାଣି
ତାଙ୍କ ଘଣ୍ଟାନାଦେ ପୂରେ ଧରଣୀ । ୩ ।

ମହାନାଦ କରି ମୁଖ ବିସ୍ତାରି
ଶୁଣି ପଳାଇଲେ ଭୟକୁ କରି
ସେ କାଳ ରାଜନ ଏମନ୍ତ ଜାଣ
ଦେବୀ ଅଙ୍ଗୁ ଜାତ ଶକ୍ତି ଯେ ପୁଣ । ୪ ।

ବ୍ରହ୍ମା ରୁଦ୍ର ସ୍କନ୍ଦ ଯେ ବିଷ୍ଣୁ ଯେନ
ଦେବୀଙ୍କ ଦେହରୁ ହେଲେ ଉତ୍ପନ୍ନ
ଗଜ ଯା ବାହାନ ସଙ୍ଗେ ନୟନ
ବଜ୍ର ଧରିଣ ସଂଗ୍ରାମେ ଗମନ । ୫ ।

Digitized by srujanika@gmail.com

ହଂସଯୁକ୍ତ ବିମାନରେ ଯେ ଜାଣ
ବ୍ରହ୍ମାୟଣୀ ଦେବୀ ତହିଁ ବସିଣ
ଅକ୍ଷସୂତ୍ର କମଣ୍ଡଳୁକୁ ଧରି
ସଂଗ୍ରାମକୁ ଦେବୀ ଆଗେ ବାହାରି । ୬ ।
ବୃଷଭ ଚଢ଼ି ମାହେଶ୍ୱରୀ ଦେବୀ
ତ୍ରିଶୂଳ ଧରି ସଂଗ୍ରାମକୁ ଯିବି
ଚନ୍ଦ୍ରରେଖା ଶିରେ ବିରାଜୁଅଛୁ
ତେଜରେ ଅତ୍ୟନ୍ତ ଶୋଭା ପାଉଛୁ । ୭ ।
ଗରୁଡ଼ ଚଢ଼ି ବୈଷ୍ଣବ ଶକ୍ତି
ଶଙ୍ଖଚକ୍ର ଗଦାପଦ୍ମ ଧରନ୍ତି
ଯଜ୍ଞ ବରାହେଣୀ ରୂପ ପ୍ରକାଶି
ଶକ୍ତି କି ଧରଣ ସଂଗ୍ରାମେ ଆସି । ୮ ।
ନରସିଂହ ରୂପ ଧରଣ ଦେବୀ
ସଟା ନଖ ତେଜ କି ଅବା ରବି
ଇନ୍ଦ୍ରାଣୀ ରୂପରେ ଚଢ଼ିଣ ଗଜ
ସହସ୍ରେ ନୟନ କରରେ ବଜ୍ର । ୯ ।
ମୟୂର ବାହନ ଯେ କାତ୍ୟାୟନୀ
ଶଙ୍ଖ ଗୃପଧରି କୋଧକୁ ଘେନି
ଉଗ୍ର ରୂପକୁ ଚଣ୍ଡିକା ଧଇଲେ
ଏତେ ଶକ୍ତିମାନ ଜାତ ଯେ କଲେ । ୧୦ ।
ଧୂମ୍ର ଜଟିଳକୁ ଦେବୀ ଯେ ଗୁହିଁ
ଶୁମ୍ଭ ନିଶୁମ୍ଭଙ୍କୁ କହ ଯେ ଯାଇଁ
ଇନ୍ଦ୍ରାଦି ଦେବତା ସ୍ୱର୍ଗକୁ ଦିଅ
ପ୍ରାଣକୁ ରଖିବୁ ଯେବେ ତୋ ଦେହ । ୧୧ ।
ଏହା ନ କଲେ ତୋ ଅଙ୍ଗନାଶ
ମୋର ଶୃଗାଳ ଖାଇବେ ଅବଶ୍ୟ
ଦେବୀ ବାଣୀ ଶୁଣି ଦୂତ ଯେ ଗଲା
ଶୁମ୍ଭ ନିଶୁମ୍ଭର ଆଗେ କହିଲା । ୧୨ ।
ଦୂତ କହନ୍ତେ ରାକ୍ଷସ କୋପିଲା
କାତ୍ୟାୟନୀ ପାଶେ ବହନ ଗଲା
ଶର ଶକ୍ତି କି ବୃଷ୍ଟି କଲା ତହିଁ
ଦେବୀ ଛେଦିଲେ କଣ୍ଠରେ ଗୁହିଁ । ୧୩ ।



Digitized by srujanika@gmail.com

କାଳୀ ଶୂଳରେ ବିଦାରି ଦୈତ୍ୟଙ୍କୁ
ଖଟ୍ୱାଙ୍ଗରେ ପୁଣି ମାରି ତାହାଙ୍କୁ
ଦେବୀଗଣେ ଧରି ଯେ ଯାହା ଶସ୍ତ୍ର
କୋପେ ପ୍ରହାରିଲେ ଦୈତ୍ୟଙ୍କ ଗାତ୍ର । ୧୪ ।
କେତେବେଳେ ଦନ୍ତ ଶସ୍ତ୍ରେ ପ୍ରହାରି
ମାତୃଗଣମାନେ କ୍ରୋଧକୁ କରି
ଦେତ୍ୟଙ୍କୁ ମାରନ୍ତେ ଭୟକୁ କଲେ
ଛିନ୍ନ ଭିନ୍ନ ହୋଇ ପଳାଇଗଲେ । ୧୫ ।
ଏମନ୍ତ ଦେଖି ରକ୍ତବୀଜ ଦୈତ୍ୟ
କ୍ରୋଧକୁ ବହିଲା ସେହୁ ତୁରିତ
ଯୁଦ୍ଧ କରନ୍ତେ ସହସ୍ର ବାଜଣ
ରକ୍ତ ବିନ୍ଦୁ ଅଙ୍ଗୁ ଗଳିଲା ପୁଣ । ୧୬ ।
ପୃଥ୍ୱୀରେ ପଡ଼ନ୍ତେ ସେପରି ରୂପ—
ଧରି ଯୁଦ୍ଧ କଲେ କରିଣ କୋପ
ଯେଝା ଶସ୍ତ୍ରରେ ଦେବୀଗଣ ମାରି
ପୁଣି ଦୈତ୍ୟଜାତ ସଂସାର ପୂରି । ୧୭ ।
ତାହା ଦେଖି ଦେବେ ଭୟକୁ କଲେ
ସେ କାଳୀ କାଳୀ ଚାମୁଣ୍ଡେ କହିଲେ
ତୁମ୍ଭର ମୁଖକୁ ବିସ୍ତାର କରି
ଦୈତ୍ୟଙ୍କ ରୁଧିର ଭକ୍ଷ ସତ୍ୱରି । ୧୮ ।
ଶୁଣିଣ ଚାମୁଣ୍ଡା ରକ୍ତକୁ ଖାଇ
କ୍ଷୀଣ ରକ୍ତ ହେଲା ଦୈତ୍ୟଙ୍କ ଦେହି
ସେକାଳେ କାଳୀ ଅଟ୍ଟହାସ କରି
ବହୁ ନାଦ ଶବ୍ଦେ ସଂସାର ପୂରି । ୧୯ ।
ଏପରି କହି ମହାଯୁଦ୍ଧ କଲେ
ଗଦା ଶକ୍ତି ଶୂଳେ କେତେ ଯେ ମଲେ
ଦୈତ୍ୟଙ୍କ ରକ୍ତ ଦେବୀଙ୍କର ଡାକ
ତ୍ରିଲୋକ କମ୍ପିଲା ହୋଇଲା ଦକ । ୨୦ ।
ହାସକୁ ଦେବୀ ତହିଁ ପ୍ରକାଶିଲେ
ଖଡ଼୍‌ଗେ ରକ୍ତବୀଜ ଶିର ଛେଦିଲେ
କେ ଶୂଳେ କେ ଚକ୍ରେ ଖଡ଼୍‌ଗେ ହାଣି
ରକ୍ତବୀଜ ମରି ପଡ଼େ ଧରଣୀ । ୨୧ ।

Digitized by srujanika@gmail.com

ଦେଖି ସୁରଗଣ ହରଷ ହୋଇ
ମାତୃଗଣ ନୃତ୍ୟ କଲେକ ତହିଁ ।
ଅତି ହରଷତେ ହରଷ ହୋଇଲେ
ନୃପତି ଶ୍ରୀକାଳୀ ପାଦ ଧ୍ୟାଇଲେ । ୨୨ ।

ଇତି ଶ୍ରୀ ଚଣ୍ଡୀମାହାତ୍ମ୍ୟେ ରକ୍ତବୀଜ ବଧ ମାଳଶ୍ରୀ ଅଷ୍ଟମ ଆଖ୍ୟାନ ସମାପ୍ତ ।



## ନବମ ଆଖ୍ୟାନ

ଘୋଷା—
ଜୟ ଜୟ ଦୁର୍ଗା ଦୁର୍ଗତିନାଶିନୀ ଜୟ ମଙ୍ଗଳା ବିମଳା
ପୁଣି ଭବ ପାରିବାରେ ତା ନାମ ଭେଳା । ଇତି ପାଠ ।

ବୈଷ୍ଣବୀ ରୂପ ଧରି ଗରୁଡ଼େ ବିଜେ କରି ଚକ୍ରଗଦାକର ଧାରିତେ
ପରମ ଈଶ୍ୱରୀ ଅତି ଆର୍ତ୍ତି ହରି ଅଭୟ ବର ଦିଅ ସୁଚିତେ ।
ପୁଣି ଅନେକ ନାମ ବହି ଜଗତେ । ପଦ ।
ରାଜା କହୁଛନ୍ତି ହେ ଋଷି ଶୁଣ
ଦେବୀଙ୍କ ରହସ୍ୟ କହିଲ ପୁଣ
ରକ୍ତବୀଜ ଦୈତ୍ୟ ନାଶ ଯାଆନ୍ତେ
ଶୁଣିକରି ଶୁମ୍ଭ କି କଲା ଚିତ୍ତେ । ୧ ।
ଦେବୀଙ୍କର ଚରିତ ଅଟଇ ଦିବ୍ୟ
ପୁଣି ଶୁଣିବାକୁ ହଉଛି ତବ
ହେ ଭଗବାନ ପୁଣି ମତେ କହ
ଋଷି କହୁଛନ୍ତି ଶୁଣ ସନ୍ଦେହ । ୨ ।
ରକ୍ତବୀଜ ବଧ ପୁଣି ଶୁଣିଲ
ଶୁମ୍ଭ ନିଶୁମ୍ଭ ଅତି କୋପ ହେଲ
ଦୈତ୍ୟ ସେନାପତି ସଙ୍ଗରେ ଘେନି
ଦେବୀଙ୍କ ପାଶକୁ ଗଲ ବହନ । ୩ ।
ସେ ମହାଶୂର ଆଗମନ ଦେଖି
ଚଣ୍ଡୀ କ୍ରୋଧ କଲେ ଦୈତ୍ୟ ନିରେଖି
ମାତୃଗଣମାନେ ଶସ୍ତ୍ରକୁ ଧରି
ଦେବୀ ଦୈତ୍ୟଗଣେ ଯୁଦ୍ଧ ଯେ ହାରି । ୪ ।

Digitized by srujanika@gmail.com

ଶୁମ୍ଭ ନିଶୁମ୍ଭ ଯେ ଦୃପ ଧଇଲେ
ବରଷା ପରି ଶର ବୃଷ୍ଟି କଲେ
ସେ ଶରମାନଙ୍କୁ ଚଣ୍ଡିକା ଛେଦି
ପୁଣି ବନ୍ଧନ୍ତେ ଦେବୀ ଅଙ୍ଗେ ଭେଦି । ୫ ।
ନିଶୁମ୍ଭ ଖଡ଼୍‌ଗ ଚର୍ମକୁ ଧଇଲା
ଦେବୀଙ୍କ ସିଂହକୁ ପ୍ରହାର କଲା
ସିଂହ ପଦାଘାତେ ଚର୍ମ ଖଡ଼୍‌ଗ
ଛେଦି ପକାଇଲା ଦୈତ୍ୟର ବେଗ । ୬ ।
ପୁଣି ଶକ୍ତି ଧରି ଦେବୀ ଉପରେ
ଦଇତ ପିଟିଲା ଅତି କୋପରେ
ଚକ୍ରରେ ଦେବୀ ଶକ୍ତିକୁ ଛେଦିଲେ
ଶର ମାରନ୍ତେ ମୁଷ୍ଟିରେ ଭାଙ୍ଗିଲେ । ୭ ।
ପୁଣି ଦୈତ୍ୟରାଜା ଗଦା ପ୍ରହାରି
ଶୂଳରେ ଦେବୀ ଖଣ୍ଡ ଖଣ୍ଡ କରି
ପରଶୁ ମାରନ୍ତେ ବାଣେ ଛେଦିଲେ
ଶରରେ ଦେହ ଖଣ୍ଡ ଖଣ୍ଡ କଲେ । ୮ ।
ନିଶୁମ୍ଭ ଭୂମିରେ ପଡ଼ନ୍ତେ ପୁଣି
ଶୁମ୍ଭ କୋପକଲା ଦେବୀଙ୍କୁ ଜାଣି
ରଥରେ ଚଢ଼ିଲା ସେହୁ ତକ୍ଷଣେ
ଅଷ୍ଟଭୁଜେ ଶସ୍ତ୍ର ଧଇଲା ପୁଣ । ୯ ।
ଦୈତ୍ୟଙ୍କୁ ଦେଖି ଶଙ୍ଖନାଦ କଲେ
ଘଣ୍ଟା କମ୍ବୁ ଶବ୍ଦେ ମହୀ ପୂରିଲେ
ଦେବୀ ତେଜରେ ସବୁସୈନ୍ୟ ମରି
ସିଂହ ନାଦକୁ ଦେବୀ ବେଗ କରି । ୧୦ ।
ସେ ନାଦେ ଗଗନ ଦିଗ ପୂରିଲା
ଦୈତ୍ୟଙ୍କ ହୃଦୟ ଭୟେ କମ୍ପିଲା
ପୃଥ୍ୱୀ ଆକାଶେ ଯେତେ ଦୈତ୍ୟ ଥିଲେ
ଦେବୀ ଅଟ୍ଟହାସେ ପ୍ରାଣ ତେଜିଲେ । ୧୧ ।
ସେ ଶବ୍ଦ ଶୁଣି ଶୁମ୍ଭ ପଳାଇଲା
ରହ ରହ ବୋଲି ଦେବୀ ଡାକିଲା
ଶୂନ୍ୟରେ ରହି ଦେବୀଙ୍କି ମାଗିଣ
ହୁଙ୍କାର ନାଦରେ ଦେବୀ ଛେଦିଣ । ୧୨ ।

Digitized by srujanika@gmail.com

ଅନେକ ବାହୁ ଜାତ ଅଙ୍ଗୁ ଦୈତ୍ୟ
　　ଚକ୍ରରେ ଦେବୀ ଛେଦିଲେ ତୁରତ
ଦୁର୍ଗତିନାଶନୀ ସେ ଦୁର୍ଗା ପୁଣି
　　ତା ଶର ସନ୍ଧିଲେ ଧନୁକୁ ହାଣି । ୧୩ ।
ଶୂଳ ଧରି ଚଣ୍ଡୀ ହୃଦେ ପ୍ରହାରି
　　ଭୂମିରେ ପଡ଼ିଲା ସେ ବେଗ କରି
ଖଡ଼୍‌ଗରେ ଛେଦିଲେ ଦେବୀ ବଦନ
　　ପ୍ରାଣକୁ ତେଜିଲା ଦୈତ୍ୟରାଜନ । ୧୪ ।
କମଣ୍ଡଳୁ ଜଳେ ବ୍ରହ୍ମାଣୀ ନାଶି
　　ମାହେଶ୍ୱରୀ ତ୍ରିଶୂଳରେ ବିନାଶି
ବାରାହୀ ତୁଣ୍ଡଘାତେ ଚୂର୍ଣ୍ଣ କରି
　　ବୈଷ୍ଣବୀ ଚକ୍ରରେ ଦୈତ୍ୟ ସଂହାରି । ୧୫ ।
ଇନ୍ଦ୍ରାଣୀ ବଜ୍ର ଧରି ପିଟିଲେ
　　କେତେ କେତେ ଦୈତ୍ୟ ସେଥିରେ ମଲେ
ବାକି ଶେଷ ଦୈତ୍ୟ କାଳୀ ଭକ୍ଷିଣ
　　ଅସୁର ନିପାତ ହେଲେ ଯେ ଜାଣ । ୧୬ ।
ଶ୍ରୀ ଦେବୀ ଅଟନ୍ତି ଦୈତ୍ୟ ଦଳଣୀ
　　ଦୁଷ୍ଟ ଦୈତ୍ୟଙ୍କୁ ମାରିଲେ ତକ୍ଷଣି
ସୋମନାଥ ନୃପ ହେଉଛି ବନ୍ଧ
　　କରୁଣାକର ଯେ କୃପାକୁ ବନ୍ଧୁ । ୧୭ ।

ଇତି ଶ୍ରୀ ଚଣ୍ଡୀମାହାତ୍ମ୍ୟେ ନିଶୁମ୍ଭ ବଧ ମାଳଶ୍ରୀ ନବମ ଆଖ୍ୟାନ ସମାପ୍ତ ।



## ଦଶମ ଆଖ୍ୟାନ

ଘୋଷା—

ଜୟ ଜୟ ଦୈତ୍ୟ ରାଜନଦହନୀ, ଜୟ ଅମ୍ବୁଜନୟନୀ
ପୁଣି ଲୋକଙ୍କୁ ତୋଷିଲ ପ୍ରସନ୍ନ ଘେନ । ଇତିପାଠ ।
ଅନେକ-ରୂପିଣୀ ଏକ ଧାରିଣୀ ହଂସଗାମିନୀ ଚଣ୍ଡିକେ
ଗୃରୁ ଚତୁର୍ଭୁଜ ଶସ୍ତ୍ରକରେ ତେଜ କାନ୍ତି ଅତିଉଜ ଶୋଭିତେ
ପୁଣି ସଦାକାଳେ ହର୍ଷ ଜନଲୋକରେ । ପଦ ।

Digitized by srujanika@gmail.com

ଋଷି କହୁଛନ୍ତି ନିଶୁମ୍ଭ ଦୈତ୍ୟ
ମରିବା ଦେଖି କୋପକଲା ଭ୍ରାତ
ହେ ଦୁର୍ଗା ଗର୍ବକୁ କପାଇଁ କରୁ
ଅନ୍ୟ ବଳ ଆଶ୍ରେ ବଳେ ବହୁରୁ । ୧ ।
ଦୈତ୍ୟବାଣୀ ଶୁଣି ଦେବୀ କହିଲେ
ଜଗତେ ଏକ ମୁଁ ଜାଣ ବୋଇଲେ
ଦେଖ ତୁ ବିଭୂତ ମୋର ଦେହରେ
ସ୍ଥିତ ହେଉଛନ୍ତି ଏକ ଠାବରେ । ୨ ।
ବ୍ରହ୍ମାଣୀ ଯେନ ଯେତକ ଦେବୀ
ଅମ୍ବିକା ଦେହରେ ରହିଲେ ସବି
ଦେବୀ କହିଲେ ରାକ୍ଷସଙ୍କୁ ଗୁହିଁ
ଏକ ହୋଇ ରହିଅଛୁ ଯେ ମୁହିଁ । ୩ ।
ଆଜ ଯୁଦ୍ଧରେ ଏକ ମୁହିଁ ଜାଣ
ଋଷି କହିଲେ ରାଜନ ତୁ ଶୁଣ
ଶୁମ୍ଭ ଦୈତ୍ୟ ଦେବୀଙ୍କର ସେ ଯୁଦ୍ଧ
ଶୂନ୍ୟେ ଦେଖୁଥିଲେ ସର୍ବ ବିବୁଧ । ୪ ।
ଅତି ତୀକ୍ଷ୍ଣ ଶର ଧରି ରାକ୍ଷସ
ଦେବୀଙ୍କି ବିନ୍ଧଣ କରଇ ତ୍ରାସ
ସେ ଯୁଦ୍ଧ ଦେଖି ଲୋକେ ଭୟ କଲେ
ଦେବୀ ସହସ୍ରେ ଶର ଯେ ମାଇଲେ । ୫ ।
ଦାନବ ଇନ୍ଦ୍ର ପ୍ରତି ଶର କରି
ସେ ଶରମାନରେ ଢାଙ୍କି ବିସ୍ତାରି
ଦୈତ୍ୟ ବିନ୍ଧନ୍ତେ ଦେବୀ ହୁଂକାର ରେ
ସେ ଶରମାନଙ୍କୁ କାଟିଲି ସତ୍ୱରେ । ୬ ।
ପୁଣି ଶତେ ଦୈତ୍ୟ ଶର ବିନ୍ଧିଲା
ଦେବୀଙ୍କ ଦେହେ ଆଚ୍ଛାଦିତ କଲା
ସେହିକ୍ଷଣି ଦେବୀ ବିନ୍ଧଣ ଶର
ତତ୍‌କ୍ଷଣେ କାଟିଲେ ଧନୁ ତାହାର । ୭ ।
ଧନୁ ଛାଡ଼ନ୍ତେଣ ଶକ୍ତି ଧଇଲା
ଚକ୍ର ପେଶି ଦେବୀ ହସ୍ତୁ କାଟିଲା
ଶତେ ଚନ୍ଦ୍ରତେଜ ଖଡ଼୍‌ଗ ହସ୍ତରେ
କ୍ରୋଧେ ଦୈତ୍ୟ ଧାଏଁ ଦେବୀ ଉପରେ । ୮ ।

Digitized by srujanika@gmail.com

ହସ୍ତ ଖଡ୍‌ଗ ଛେଦି ରଥ ସାରଥି
ବାଣ ବନ୍ଧ ଦେବୀ ନାଶେ ତତ୍‌ପତି ।
ବିରଥୀ ହୁଅନ୍ତେ ମୁଷ୍ଟିକ ଧରି
ଦେବୀଙ୍କ ହୃଦରେ ପ୍ରହାର କରି । ୯ ।
ଦେବୀ ପ୍ରହାରନ୍ତେ ଦଇତ ପଡ଼ି
ଭୂମିରୁ ଉଠି କଲା ଘୋର ରଡ଼ି
ତକ୍ଷଣି ଚଣ୍ଡିକା ଶୂନ୍ୟରେ ରହି
ଦେଖିକରି ଦୈତ୍ୟ ବେଗରେ ଧାଇଁ । ୧୦ ।
ସେଠାରେ ଦେବୀ ଦୈତ୍ୟ ମହାରଣ
ଭୂମିଭ୍ରମି ପଡ଼େ ପୃଥ୍ୱୀରେ ପୁଣ
ମହୀରେ ପଡ଼ନ୍ତେ ମୁଷ୍ଟିକି ଧରି
ଦେଖି ଦେବୀ ତାହା ଦୂରୁଁ ନିବାରି । ୧୧ ।
ଧରଣି ଦୈତ୍ୟକୁ ତଳେ ପକାଇ
ଶୂଳେ ଶୁମ୍ଭ ହୃଦ ଫଟାଇ ଦେଇ
ସପତ ସମୁଦ୍ର ସପତ ଦ୍ୱୀପ
ଅଚଳ ସହିତେ ହୋଇ ପ୍ରକମ୍ପି । ୧୨ ।
ଦୁରାତ୍ମା ଦୈତ୍ୟର ହତକୁ ଦେଖି
ଅଖିଳ ସଂସାର ହୋଇଲେ ସୁଖୀ
ଆକାଶ ନିର୍ମଳ ନଦୀ ବହିଲେ
ସକଳ ଉତ୍ପାତ ଶାନ୍ତ ହୋଇଲେ । ୧୩ ।
ଗନ୍ଧର୍ବ ସେଠାରେ କଲେ ଗାୟନ
ହରଷ ହୋଇଲା ଅମର ମନ ।
ମଳୟ ପବନ ମନ୍ଦେ ବହିଲେ
ଅପସରାମାନେ ନୃତ୍ୟକୁ କଲେ । ୧୪ ।
ଅଗ୍ନି ଶାନ୍ତ ହୋଇ ଜଳିଲେ ପୁଣି
ଦିଗରେ ହୋଇଲା ସୁସ୍ୱର ଧ୍ୱନି
ଅମ୍ବିକା ପ୍ରସାଦୁ ଏମନ୍ତ ହେଲା
ନୃପତି ସେ ପାଦେ ଚିତ୍ତେ ଧ୍ୟାଇଲା । ୧୫ ।

ଇତି ଶ୍ରୀ ଚଣ୍ଡୀମାହାତ୍ମ୍ୟେ ଶୁମ୍ଭ ବଧ ମାଳଶ୍ରୀ ଦଶମ ଆଖ୍ୟାନ ସମାପ୍ତ ।



Digitized by srujanika@gmail.com

## ଏକାଦଶ ଅଧ୍ୟାୟ

ଘୋଷା—

ଜୟ ଜୟ ଶାକମ୍ଭରୀ ଗୋପାଳମୀ ଜୟ ରକ୍ତଦନ୍ତିନୀ
ପୁଣି କେତେ ବିପତ୍ତିରୁ ରଖ ଧରଣୀ । ସ୍ତୁତିପାଠ ।

ବିନ୍ଧ୍ୟବାସିନୀ ଦୁଃଖନାଶିନୀ ଜନତୋଷିନୀ ବନ୍ଦିତେ
କୃପାଦାୟିନୀ ଗୋପନନ୍ଦନୀ ସୁରନନ୍ଦନୀ ପୂଜିତେ
ପୁଣି ଭ୍ରାମରୀରୂପେ ବିଖ୍ୟାତ ଜଗତେ । ପଦ ।

ଋଷି କହନ୍ତି ମହାସୁର ହତ
ଜାଣିଣ ଇନ୍ଦ୍ରାଦି ଦେବେ ଆଗତ
କାତ୍ୟାୟନୀଙ୍କ ଅଗ୍ରଭାଗେ ପୁଣି
ସେଠାକୁ ଆଗତ ଦେବତାଶ୍ରେଣୀ । ୧ ।

ହେ ଦେବୀ ପ୍ରପନ୍ନ ଆର୍ତ୍ତିକ ହର
ପ୍ରସନ୍ନ ହୋଇ ଜଗତ ଉଦ୍ଧାର
ହେ ବିଶ୍ୱେଶ୍ୱରୀ ପ୍ରସନ୍ନକୁ ଘେନ
ବିଶ୍ୱକୁ ରଖିଛ ମା' ଗୋ ଜନନୀ । ୨ ।

ଜଗତର ଆଧାର ଯେ ବୋଲାଅ
ମହୀ ସ୍ୱରୂପକୁ ଆପଣ ବହ
ଜଳରୂପିଣୀ ଆପଣ ହୋଇଣ
ବିଶ୍ୱଙ୍କ ରୂପକୁ ବୋହୁଛ ପୁଣ । ୩ ।

ମୋହିତ କରିଛ ସର୍ବଜନଙ୍କୁ
ପ୍ରସନ୍ନେ ମୁକତି ଦିଅ ଯେ ତାଙ୍କୁ
ତୁମ୍ଭେ ବିଦ୍ୟା, ସର୍ବେ ସ୍ତ୍ରୀ ରୂପରେ
ଅମ୍ବିକା ନାମକୁ ଧର ମହୀରେ । ୪ ।

ତୁମ୍ଭେ ଏକ ସର୍ବ ହୃଦରେ ଅଛ
ସ୍ୱର୍ଗ ଅପବର୍ଗ ତୁମ୍ଭେ ଦେଉଛ ।
ସର୍ବମଙ୍ଗଳ ଶିବା ଯେ ଗଉରୀ
ନମୋ ନାରାୟଣୀ ନିନେତ୍ରଧାରୀ । ୫ ।

Digitized by srujanika@gmail.com

ସୃଷ୍ଟି ସ୍ଥିତି କର ସଂହାର କର
ଶକ୍ତି ରୂପ ଯେ ଅଟଇ ତୁମ୍ଭର
ଗୁଣାଶ୍ରୟ ଗୁଣମୟ ଯେ ଜାଣ
ନମୋ ନାରାୟଣୀ ତୁମ୍ଭେ ଶରଣ । ୬ ।

ଦୀନଜନ ମାନେ ଶରଣ ଗଲେ
ତାଙ୍କର ଆର୍ତ୍ତିନାଶ ତୁମ୍ଭେ ଭଲେ
ହଂସଯୁକ୍ତ ବିମାନରେ ବ୍ରହ୍ମାଣୀ
ହେ ମାହେଶ୍ୱରୀ ନମୋ ନାରାୟଣୀ । ୭ ।

ତ୍ରିଶୂଳ ଚନ୍ଦ୍ରରେଖାକୁ ଧରିଛ
ମହା ବୃଷଭ ଉପରେ ଚଢ଼ିଛ
ମୟୂର ମୁକୁଟ ଯାର ବାହନ
ନମୋ ନାରାୟଣୀ କୁମାରୀ ଯେନ । ୮ ।

ଶଙ୍ଖ ଚକ୍ର ପଦ୍ମ ଗଦାକୁ ଧରି
ଗରୁଡ଼ ଉପରେ ବିଜୟେ କରି
ବିଷ୍ଣୁ ସ୍ୱରୂପକୁ ପ୍ରସନ୍ନେ ଧର
ନମୋ ନାରାୟଣୀ ତୁମ୍ଭ ପସ୍ୱର । ୯ ।

ମହାଚକ୍ର ଧରି ବରାହୀ ରୂପେ
ଦନ୍ତରେ ଧରଣୀ ଧଇଲ ଆପେ
ଜୟ ଶିବ ରୂପୀ ଯେ ବାରାହିଣୀ
ନମୋ ନାରାୟଣୀ ତୁମ୍ଭକୁ ପୁଣି । ୧୦ ।

କିରୀଟୀ ଶିରରେ ବଜ୍ର ଯେ କରେ
ସହସ୍ରେ ନେତ୍ରକୁ ଧରି ବିହରେ
ବୃତ୍ର ପ୍ରାଣକୁ ତୁମ୍ଭେ ଦେବୀ ହର
ନମୋ ନାରାୟଣୀ ତୁମ୍ଭ ପସ୍ୱର । ୧୧ ।

ଶିବ କାନ୍ତ ଧରି ଦୈତ୍ୟ ନାଶିଲ
ଘୋର ରୂପରେ ମହାରବ ଦେଲ
କରାଳ ଦନ୍ତ ମୁଖ ଭୟଙ୍କର
ଶିରମାଳା ଲମ୍ବି ଅଛି ହୃଦର । ୧୨ ।



Digitized by srujanika@gmail.com

ସର୍ବ ଦିଗେ ଅଛେ ଯେ ପାଦପାଣି
ମୁଖ ନେତ୍ର ଶିର ସର୍ବତ୍ର ପୁଣି
ଏହୁପରି ଅଛୁ ଶ୍ରବଣ ଘେନ
ନମୋ ନାରାୟଣୀ କରୁଛୁ ଧ୍ୟାନ । ୧୩ ।

ସର୍ବ ସ୍ୱରୂପୀ ସମସ୍ତଙ୍କ ବନ୍ଧୁ
ଭୟରୁ ଉଦ୍ଧାର କର ଯେ ପ୍ରଭୁ
ନମୋ ଦୁର୍ଗାଦେବୀ ତୁମ୍ଭ ପୟର
ଏ ଭବ ସଂସାରୁ ତୁମ୍ଭେ ଉଦ୍ଧାର । ୧୪ ।

ତୁମ୍ଭ ବଦନ ଅଟେ ମନୋହର
ତହିଁରେ ତ୍ରିନେତ୍ର ଆପଣ ଧର
ସର୍ବଭୂତଙ୍କୁ ରଖିଛ ଆପଣ
ଜୟ କାତ୍ୟାୟନୀ ନମୁଛୁ ପୁଣ । ୧୫ ।

ଅତ୍ୟନ୍ତ ଜ୍ୱାଳା ଅତି ଉଗ୍ର ରୂପେ
ଅଶେଷ ଅସୁର ନାଶିଲ କୋପେ
ତ୍ରିଶୂଳଧାରିଣୀ ହେ ଭଦ୍ରକାଳୀ
ନମୁଛୁ ତୁମ୍ଭଙ୍କୁ ହେ ମୁଣ୍ଡମାଳି । ୧୬ ।

ଅଶେଷ ରୋଗ ତୁମ୍ଭ ପ୍ରସନ୍ନରୁ
ନାଶ ଯେ ହୁଅନ୍ତି ପ୍ରାଣୀ ଦେହରୁ
ଯେମାନେ ତୁମ୍ଭଙ୍କୁ ଆଶ୍ରେ କରନ୍ତି
ତାଙ୍କର ବିପତ୍ତି ନାଶ ହୁଅନ୍ତି । ୧୭ ।

ତୁମ୍ଭେ ବିଶ୍ୱେଶ୍ୱରୀ ଅଟ ପରମ
ବିଶ୍ୱର ଆତ୍ମା ଧରିଛ ଉତ୍ତମ
ହେଲେ ବିପ୍ରସନ୍ନ ଆମ୍ଭରେ ହୋଇ
ନାଶିଲ ଦଇତ ହେ ମହାମାୟୀ । ୧୮ ।

ଦେବଙ୍କ ସ୍ତୁତି ଶୁଣି ଭଗବତୀ
କହିଲେ ପ୍ରସନ୍ନ ହେଲି ମୋ ମତି
କି ବର ମାଗୁଛ ମୁଁ ଦେବି ଶୁଣ
ଜଗତ ଉପକାର ହେବ ପୁଣ । ୧୯ ।

Digitized by srujanika@gmail.com

ଦେବୀ ବାଣୀ ଶୁଣି ଦେବେ କହିଲେ
ସର୍ବ ବାଧାକୁ ନାଶିଲ ଯେ ଭଲେ
ଆମ୍ଭ ବଇରୀ କ ନାଶିଲ ତୁମ୍ଭେ
କ କରବୁ ତୁମ୍ଭ କାର୍ଯ୍ୟକୁ ଦେବେ । ୨୦ ।

ଦେବତା ବାଣୀ ଶୁଣି ଗୋସାମଣୀ
ପୂର୍ବ କଥା ଦେବୀ କହିଲେ ପୁଣି ।
ଯୁଗେଯୁଗେ ଦୁଷ୍ଟେ ହୁଅନ୍ତେ ଜାତ
ମତେ ଚନ୍ତାକୁ କରନ୍ତ ଜଗତ । ୨୧ ।

ଅଷ୍ଟବିଂଶତ ଯୁଗର ଅନ୍ତରେ
ବୈବସ୍ୱତ ନାମ ମନୁ ତହିଁରେ
ଶୁମ୍ଭ ନଶୁମ୍ଭ ଯେ ବେନ ଦଇତ
ସେ କାଳେ ହୋଇଲେ ସେହୁ ସମ୍ଭୂତ । ୨୨ ।

ନନ୍ଦ ଗୋପପୁରେ ଜାତ ହୋଇଣ
ବେନ ଅସୁରଙ୍କୁ ମାଇଲି ପୁଣ
ବିନ୍ଧ୍ୟାଞ୍ଚଳରେ ମୁଁ ଯାଇ ରହିଲି
ବିନ୍ଧ୍ୟବାସିନୀ ନାମ ମୁଁ ବହିଲି । ୨୩ ।

ପୁନରପି ଦୈତ୍ୟେ ହୋଇଲେ ଜାତ
ତାଙ୍କ ନାଶ ଅର୍ଥେ ହେଲି ସମ୍ଭୂତ
ତାହାଙ୍କୁ ଭକ୍ଷଣ କଲି ମୁଁ ଯେନ
ତେଣୁ ରକ୍ତ ହେଲା ମୋହ ବଦନ । ୨୪ ।

ଡାଳିମ୍ବ କୁସୁମ ଦନ୍ତ ଧଇଲେ
ଦେବ ନରଲୋକେ ସ୍ତୁତ କ କଲେ
ସେ ଦିନୁ ମୋ ନାମ ରକ୍ତଦନ୍ତିକା
ଖ୍ୟାତ ହୋଇଅଛୁ ମୁହିଁ ଅମ୍ବିକା । ୨୫ ।

ଶତେ ବରଷ ଅନାବୃଷ୍ଟି କର
ମୁନମାନେ ସ୍ତୁତ କଲେ ବସ୍ତର
ଅଯୋନୀ ସମ୍ଭୂତେ ହୋଇଲି ତାତ
ଶତେ ନେତ୍ରରେ ଗ୍ରହିଲି ତୁରତ । ୨୬ ।

Digitized by srujanika@gmail.com

ସେହ୍ବଦନୁ ନରେ ଶତାକ୍ଷି ବୋଲ
ଭୁତି କରନ୍ତି ନାମକୁ ଖଳି
ଶାକମ୍ଭରୀ ନାମ ଧଇଣ ପୁଣି
ଶାକେ ପୁଷ୍ଟି କଲି ମୁହିଁ ଧରଣୀ । ୨୭ ।

ଦୁର୍ଗମ ଅଟଇ ନାମ ଯାହାର
ସେ ଦୈତ୍ୟ ନାଶି ଦୁର୍ଗା ନାମ ମୋର
ହିମାଚଳରେ ଭୀମା ନାମେ ଦୈତ୍ୟ
ମୁନି ରକ୍ଷାକଲି ନାଶି ଭୁରିତ । ୨୮ ।

ଭୀମା ଦେବୀ ନାମ ହେଲା ମୋହର
ମୋ ନାମ ଧରନ୍ତି ଦେବତା ନର
ଅରୁଣ ନାମେ ଏକ ଦୈତ୍ୟ ଥିଲା
ତିନି ଲୋକରେ ମହାବାଧା ଦେଲା । ୨୯ ।

ଭ୍ରମରୀ ରୂପକୁ ଧଇଲି ଜାଣି
ଦୈତ୍ୟକୁ ନାଶିଲି ତକ୍ଷଣେ ପୁଣି
ଦେବତାମାନେ ତୁମ୍ଭେ ଜାଣିଥାଅ
ଦୁଷ୍ଟ ଜନ୍ମହେଲେ ଧରଇ ଦେହ । ୩୦ ।

ତାହାଙ୍କୁ ନାଶ ମୁଁ କରେ ଅବଶ୍ୟ
ଧର୍ମକୁ ରଖିଣ ଥାଇ ବିଶେଷ
ଅତି ଆର୍ତ୍ତୀର ଆର୍ତ୍ତିକୁ ନାଶଇ
ନୃପ ସୋମନାଥ ସେ ପାଣି ଧ୍ୟାଇ । ୩୧ ।

ଇତି ଶ୍ରୀ ଚଣ୍ଡୀ ମହାତ୍ମ୍ୟେ ଦେବ୍ୟାସ୍ତୁତି ମାଳଶ୍ରୀ
ଏକାଦଶାଖ୍ୟାନ ସମାପ୍ତମ୍



## ଦ୍ୱାଦଶ ଅଧ୍ୟାୟ

ଘୋଷା—

ଜୟ ଜୟ ସର୍ବବିପତ୍ତିନାଶିନୀ ଜୟ ମଙ୍ଗଳ ସ୍ୱରୂପୀ
ପୁଣି ଅମରେ ଦେବଙ୍କୁ ଦର୍ଶନ୍ତେ ସ୍ଥାପି ।

ଜାଣି ନୋହେ ଗତ ଅତ ଯା କାରଣ ସ୍ତୁତରେ ବନ୍ଧନ ଧାତାରେ
ଅତ ଆନନ୍ଦଦାୟୀ ପ୍ରସନ୍ନ ଯାରେ ହୋଇ ସୁଖ ଲଭଇ କଣ୍ଠରେ
ପୁଣି ଯା ଅନ୍ତ ପ୍ରାଣୀ ନ ଜାଣେ ଜଗତେ ।

ପଦ—

ଦେବୀ କହନ୍ତି ଦେବଗଣେ ଶୁଣ
ଏ ସ୍ତୋତ୍ର ଯେ ଜନ କରେ ପଠନ
ତାହାର ସକଳ ବାଧାକୁ ମୁହିଁ
ନାଶ କରିଥାଏ କୃପାକୁ ବହି । ୧ ।

ମହିଷାସୁର ମଧୁକୈଟଭ ପୁଣି
ଶୁମ୍ଭ ନିଶୁମ୍ଭର ବଧକୁ ଜାଣି
ଅଷ୍ଟମୀ, ନବମୀ, ଚତୁର୍ଦ୍ଦଶୀରେ
ଏହା ଯେ ଗୁଣନ୍ତି ଶୁଣନ୍ତି ନରେ । ୨ ।

ଆପଦ ପାତକ ହୁଅଇ ନାଶ
ଦରିଦ୍ର ନୁହଇ ଧନ ବିଶେଷ
ଶତ୍ରୁ ବିଶ ରାଜଭୟ ନୁହଇ
ଅଗ୍ନି, ଶସ୍ତ୍ର, ଜଳ ଭୟ ନାଶଇ । ୩ ।

ଏ ମୋର ଅପୂର୍ବ ଚରିତ୍ର
ଭକ୍ତିରେ ଶୁଣିଲେ ହୁଏ ନିଶ୍ଚିତ
ଅତ୍ୟନ୍ତ ଉତ୍ପାତ ଯେ ଅଛି ଘୋର
ଏହା ଶୁଣନ୍ତେ ବିପତ୍ତିରୁ ତର । ୪ ।

Digitized by srujanika@gmail.com

ଯେମାନେ ପଢ଼ନ୍ତି ଏହା ସୁଚରିତେ
ତା ପାଶେ ମୁଁ ଥାଇ ଅନବରତେ
ବଳି ଦବାକାଳେ, ଅଗ୍ନି ପୂଜାରେ
ଅତ୍ୟନ୍ତ ଉତ୍ସବ ଯେଉଁ ଦନରେ । ୫ ।

ସର୍ବ ଚରିତ୍ର ପଢ଼ି ଯେହୁ ଶୁଣେ
ଶିଶିରକାଳ ପୂଜା ଯଜ୍ଞେ ଶୁଣେ
ମୋହର ଅତ୍ୟନ୍ତ ପୂଜାକୁ ଘେନ
ଶୁଣନ୍ତେ ପଢ଼ନ୍ତେ ଦୁଃଖ ଦହନ । ୬ ।

ମୋର ଚରିତ୍ର ଦବ୍ୟ ଯେହୁ ଶୁଣେ
ସଂଗ୍ରାମ ଭୂମିରେ ସେ ନର ଜଣେ
ବଳ ଲଭଇ ଶତ୍ରୁ ନାଶ ଯାନ୍ତି
ସଦାକାଳରେ ମଙ୍ଗଳ ଲଭନ୍ତି । ୭ ।

ତାହାର କୁଳ ଆନନ୍ଦକୁ ଲଭେ
ଦୁଷ୍ଟ ସ୍ୱପ୍ନ ଆଦ ନୁହଇ କେଭେ
ଉଗ୍ର ଗ୍ରହ ପୀଡ଼ା ନାଶକୁ ପାଇ
ମୋହର ମାହାତ୍ମ୍ୟ ଯେହୁ ଶୁଣଇ । ୮ ।

ଯେ ପୁଣି ମୋ ଆଗେ ଏହୁ ଚରିତ୍ର
ପଢ଼ିଣ ପୂଜା ଯେ କରେ ଭ୍ରତ
ଗନ୍ଧ ପୁଷ୍ପ ଆଦ ଧୂପ ଦୀପରେ
ପଶୁ ଦେଇ ତୋଷେ ଅତି ସହ୍ନେରେ । ୯ ।

ବିପ୍ରଙ୍କୁ ଭୁଞ୍ଜାଇ ହୋମକୁ କରି
ଆନଆନ ଭୋଗବଧି ବିସ୍ତର
ସମ୍ମୁଖରେ ଚଢେ ବସ୍ତ୍ର କଲେ
ସର୍ବ ମଙ୍ଗଳକୁ ଲଭଇ ଭଲେ । ୧୦ ।

ଶତ୍ରୁ ନାଶ ଯାନ୍ତି ଯୁଦ୍ଧରେ ପୁଣ
ବଇରୀ ଭୟ ଯେ ନୁହଇ ଜାଣ
ବ୍ରହ୍ମା କରିଛନ୍ତି ଏହାକୁ ଘେନ
ବ୍ରହ୍ମ ଋଷିମାନେ କରେ ଗାୟନ । ୧୧ ।

Digitized by srujanika@gmail.com

ବନେ ପୀଡ଼ା ଅଗ୍ନି ଭୟକୁ ନାଶେ
ସିଂହ ବ୍ୟାଘ୍ର ପୀଡ଼ା ନୁହଇ ଲେଶେ
ମୋର ଚରିତକୁ ଯେହୁ ସୁମର
ନାନା ସଙ୍କଟରୁ ସେ ନର ତର । ୧୨ ।

ମତେ ସୁମରିଲେ ସକଳ ଖିତ
ଦୂରୁ ନାଶଯାଇ ତାର ବିପତ୍ତି
ଋଷି କହିଲେ ଦେବୀ ଦେବେ କହି
ମହାପ୍ରତାପୀ ଚଣ୍ଡୀ ତହୁଁ ଯାଇ । ୧୩ ।

ଦେବତାମାନେ ଶୁଣିଣ ଚଳିଲେ
ଯେଝା ଅଧିକାରମାନଙ୍କୁ କଲେ
ଶୁମ୍ଭ ଆଦି ଦୈତ୍ୟ ଦେବୀ ନାଶନ୍ତେ
ବାକି ଶେଷଦୈତ୍ୟ ପାତାଳ ଗତେ । ୧୪ ।

ହେ ରାଜା ଏମନ୍ତେ ସଂସାର ପୁଣି
ବ୍ୟାପି ହୋଇ ରଖେ ସେ ✠ ଗୋସାମଣୀ
ସେ ମହାକାଳୀ ମହାରୂପ ଧରି
ସଂସାର ରଖିଛ କୃପାକୁ କରି । ୧୫ ।

ଲକ୍ଷ୍ମୀ ରୂପେ ପୁଣି ପାଳେ ଜଗତ
ନାଶ ରୂପ ଧରି କରଇ ହତ
ଧୂପ ଦୀପ ପୂଜା ବିଧି କ କର
ପୁତ୍ର ଧନ ତାଙ୍କୁ ଦିଏ ଗଉରୀ । ୧୬ ।

ଶ୍ରୀ ଦେବୀ ଚରିତ୍ର ଅତି ହରଷ
ଶୁଣିଲେ ଲଭଇ ସକଳ ଯଶ
ସୋମନାଥ ରାଜ ଚଣ୍ଡୀକା ସ୍ତବ
କୃପାକର ମୋତେ କହୁଛେ ଦେବୀ । ୧୭ ।

ଇତି ଶ୍ରୀ ଚଣ୍ଡୀମାହାତ୍ମ୍ୟେ ଫଳ ଶ୍ରୁତି ମାଳଶ୍ରୀ ଦ୍ୱାଦଶ ଆଖ୍ୟାନ ସମାପ୍ତମ୍ ।



---

✠ ଗୋସାମଣୀ—ଠାକୁରାଣୀ

Digitized by srujanika@gmail.com

# ତ୍ରୟୋଦଶ ଅଧ୍ୟାୟ

ଘୋଷା—

ଜୟ ଜୟ ସୃଷ୍ଟି ସ୍ଥିତି ନାଶକାରିଣୀ ଜୟ ଈଶ୍ୱରରମଣୀ
ପୂଣି ତୁମ୍ଭେ ଆଉ ଆଉ ମୋ ଦୁଃଖ ପୁଣି । ଘଣ୍ଟାଟ ।

ସାରସାର ବାଣୀ ଦୂର ତାପ ପୁଣି, ହରଷ ଆଅ ଘେନ
ନତ୍ୟ ପୂଜାଦ୍ଧ କରଇ ଯେତ୍ତୁ ଘେନ ପ୍ରସନ୍ନେ ଆଅ ତାରେ ନରନ୍ତେ,
ପୁଣି ତୁମ୍ଭ କାହିଁ ଅଛ ବନ ଜଗତେ । ପଦ ।

ଋଷି କହୁଛନ୍ତି ନୃପତ ଘେନ
ଯେ ରୂପେ ଦେବୀ ଅଟନ୍ତି ପ୍ରଧାନ
ମନ୍ଦ୍ରୀ କ ଯେତ୍ତୁ ଧରଅଛୁ ଜାଣ
ବିଦ୍ୟାକୁ ସେନ୍ତୁ କରଛୁ ପ୍ରମାଣ । ୧ ।

ଯେ ଭଗବାନଙ୍କ ଅଟନ୍ତି ମାୟା
ପ୍ରଜାଙ୍କଠାରେ ଯେ ଅତ୍ୟନ୍ତ ଦୟା
ତୁମ୍ଭେ ବିଶ୍ୱ ଅନ୍ୟ ବିବେକୀ ଜନ
ଆଦର ତା ମୋହେ ହୁଏ ବନ୍ଧନ । ୨ ।

ହେ ମହାରାଜା ସୁରଥଙ୍କୁ ଧର
ସେ ଦେବୀ ସେବାକୁ କର ବିସ୍ତର
ନରମାନେ ତାଙ୍କୁ ସେବା କରଣ
ସ୍ୱର୍ଗ ଅପବର୍ଗ ପାଆନ୍ତି ପୂଣ । ୩ ।

ଏମନ୍ତ ମାର୍କଣ୍ଡଠାରୁ ଶୁଣିଲେ
ତାହାଙ୍କୁ ସୁରଥରାଜା ନମିଲେ
ହେ ଋଷି ରାଜ୍ୟ ମୋ ଯେ ଦିନୁ ଗଲା
ଚିନ୍ତାରେ ମୋ ମନ ନିମଗ୍ନ ହେଲା । ୪ ।

ହେ ମୁନିବୈଶ୍ୟ ଯେ ଏଠାରୁ ଯାଇଁ
ଦେବୀଙ୍କ ଦରଶନ ହେବା ପାଇଁ
ନଦୀ ପୁଳିନରେ ତପକୁ କର
ଦେବୀଙ୍କ ସୂକ୍ତକୁ ଜପ ଆଚର । ୫ ।

Digitized by srujanika@gmail.com

ମୃତ୍ତିକା ଆଣି ମୂର୍ତ୍ତିକ ସେ କଲ
ଧୂପ ଦୀପ ପୁଷ୍ପେ ତାଙ୍କୁ ତୋଷିଲ
ଆହାର ତେଜ ମନ ଧୀର କରି
ତିନ ବରଷ ଯେ ସେବା ଆଚରି । ୬ ।

ପ୍ରସନ୍ନେ ଦେବୀ କହିଲେ ତାହାଙ୍କୁ
ଯାହା ବର୍ଗ୍ଗିବ ଦେବି ମୁଁ ତୁମ୍ଭଙ୍କୁ
ରାଜା କହିଲେ ଶତ୍ରୁ ହତ କରି
ହେ ମାତ ମୋ ରାଜ୍ୟ ଦିଅ ବହୁରି । ୭ ।

ସେହିକ୍ଷଣି ବୈଶ୍ୟ କହିଲା ପୁଣ
ପୁତ୍ରାଦି ସଙ୍ଗ ଦିଅ ତତକ୍ଷଣ
ଦେବୀ କହୁଛନ୍ତି ରାଜନ ଘେନ
ଅନ୍ତକାଳେ ଶତ୍ରୁ ହେବେ ନିଧନ । ୮ ।

ତାଙ୍କ ଭକ୍ତ କ ଦେବୀ ଚଷ୍ଟେ ଘେନ
ଯେ ଯାହା ବରକୁ ଦେଲେ ଭବାନୀ
ସେଠାରୁ ଦେବୀ ଅନ୍ତର୍ଦ୍ଧାନ ହେଲେ
ସୁରଥ ରାଜା ମନ ପୁଣି କଲେ । ୯ ।

ସୂର୍ଯ୍ୟ ବଂଶରେ ସାବର୍ଣ୍ଣ ଯେ ମନୁ
ଏମନ୍ତ ଚରିତ୍ର ହେଲା ସେଦିନୁ
ଅନୁକୂଳ ନୃପ ଏମନ୍ତ କହି
ଅମ୍ବିକା ବିନା କେ କରିବ ତ୍ରାହି । ୧୦ ।

ଇତି ଶ୍ରୀ ଚଣ୍ଡୀକା ସ୍ତୋତ୍ର ମାହାତ୍ମ୍ୟ ମାଳଶ୍ରୀ
ତ୍ରୟୋଦଶ ଆଖ୍ୟାନ ସମାପ୍ତମ୍ ।



Digitized by srujanika@gmail.com